# ସ୍ମୃତି ଏକ ଦୁଷ୍ଟାମିର

ନାଟ୍ୟକାର

ହେମେନ୍ଦ୍ର ମହାପାତ୍ର



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

# ସ୍ମୃତି ଏକ ଦୁଷ୍ଟାମିର

ନାଟ୍ୟକାର


**ହେମେନ୍ଦ୍ର ମହାପାତ୍ର**

ସୁନହଟ, ବାଲେଶ୍ୱର

ଦୂରଭାଷ : ୯୮୬୧୩୫୦୯୫୧



*ପ୍ରକାଶକ* : କାଳୀପଦ ପଣ୍ଡା, **ସୁବର୍ଣ୍ଣଶ୍ରୀ ପ୍ରକାଶିନୀ**

ନେଳିଆବାଗ୍, ଶ୍ରୀକଣ୍ଠପୁର, ବାଲେଶ୍ୱର, ମୋ: ୯୪୩୭୦୮୯୨୪୧





ପ୍ରଥମ ସଂସ୍କରଣ: ୨୦୧୭, ମୂଲ୍ୟ : ଟ.୭୦/-


---

## SMRUTI EKA DUSTAMI RA


**by : Hemendra Mohapatra**

Sunhat, Balasore

Ph.: 9861350951



**Publisher : Kalipada Panda, SUBARNASHREE PRAKASHINI**

Neiliabag, Shrikanthapur, Balasore, Mob : 9437089241





**First Edition** : 2017, **Price** : Rs. 70 /-

# ଉତ୍ସର୍ଗ

ଶ୍ରୀମତୀ ମିନତି ଦାସଙ୍କୁ....

ଯିଏ ମୋ ଲେଖାଟିଏ ପଢ଼ିବା ପାଇଁ, ମୋ ନାଟକଟିଏ ଦେଖିବା ପାଇଁ ଅତି ଆଗ୍ରହରେ ଉହିଁ ବସିଥାଏ.....

ସେଇ ମୋର ସାନଭଉଣୀ

ମିନତି ହାତରେ....

'ସ୍ମୃତି ଏକ ଦୁଷ୍ଟାମିର'

- *ନାଟ୍ୟକାର*

# ସ୍ମୃତି ଏକ ଦୁଷ୍ଟାମିର

....ଅଧିକାଂଶ ବନ୍ଧୁ କହନ୍ତି ଏହା କାଳେ ମୋର ଅନ୍ୟତମ ଶ୍ରେଷ୍ଠ ନାଟକ । ଦର୍ଶକଙ୍କ ମନ୍ତବ୍ୟକୁ ଓ ଦେଖିବାର ଉତ୍କଣ୍ଠା ଦେଖିଲେ ମୁଁ ବଂଧୁମାନଙ୍କ ମନ୍ତବ୍ୟ ସ୍ୱୀକାର କରିବାକୁ ବାଧ ହୁଏ । ଏହା ଏକ କାହାଣୀପ୍ରଧାନ ନାଟକ, ଦର୍ଶକଙ୍କୁ ବାନ୍ଧି ରଖିବା ପାଇଁ ଅନେକ ଉପାଦାନ ଏଥିରେ ସ୍ୱାଭାବିକ ଭାବରେ ପରିବେଷିତ ।

ବାଲ୍ୟକାଳରେ ଅନେକ ଚପଳତା ଅବା ଦୁଷ୍ଟାମି ସ୍ମୃତି ହୋଇ ରହି ଯାଇଥାଏ । କେବେକେବେ ଏଇ ସ୍ମୃତିକୁ ରୋମନ୍ଥନ କଲେ ଆନନ୍ଦ ଲାଗେ, ଆଶ୍ଚର୍ଯ୍ୟ ଲାଗେ । କିନ୍ତୁ ଏହି ସ୍ମୃତି ବି ଅନେକ ସମୟରେ ସାଂସାରିକ ଜୀବନରେ ପ୍ରଚଣ୍ଡ ଝଡ଼ ହୋଇ ଛିଡ଼ା ହୁଏ । ସଂସାର ଭାଙ୍ଗିଯିବାର ଆଶଙ୍କା ଦେଖାଦିଏ । ଏମିତି ଏକ ସ୍ପର୍ଶକାତର ବିଷୟବସ୍ତୁ ଉପରେ ଆଧାରିତ ନାଟକ 'ସ୍ମୃତି ଏକ ଦୁଷ୍ଟାମିର' - ୨୦୦୭ ମସିହାରେ ପ୍ରଥମେ 'ସ୍ରଷ୍ଟା' ଦ୍ୱାରା ମଞ୍ଚସ୍ଥ ହୋଇଥିଲା । ପରବର୍ତ୍ତୀ ସମୟରେ ୨୦୧୪ରେ ମଧ ପୁନର୍ବାର ମଞ୍ଚସ୍ଥ ହେଲା । ଏବେବି କଥାଉଠେ, ଆଉଥରେ ମଞ୍ଚସ୍ଥ ହେଉ - ଦର୍ଶକର ଆଗ୍ରହ ଦେଖି ପ୍ରକାଶ ନିମନ୍ତେ ଆଗେଇଲି । ମଞ୍ଚସ୍ଥ ହେଲେ ଖୁସି ହେବି ।

ରମେନ୍ଦ୍ର ମହାନ୍ତି

ସ୍ରଷ୍ଟା ବାଲେଶ୍ୱର ପ୍ରଯୋଜିତ ନାଟକ
'ସ୍ମୃତି ଏକ ଦୁଷ୍ଟାମିର' ଚରିତ୍ରମାନେ

| | |
|---|---|
| ମହେଶ | ଗୌରୀଶଙ୍କର ସାହାଣୀ |
| ଓମ ପ୍ରକାଶ | ପ୍ରସନ୍ନ ଦାସ |
| ଜଗଦାନନ୍ଦ | ବିଧୁଭୂଷଣ ଓତା |
| ପଙ୍କଜ | ବିଶ୍ୱଜିତ ମହାପାତ୍ର |
| ଭୋଲା | ମନୋରଂଜନ ଦାସ |
| ବିଦ୍ୟାଧର | ଅନନ୍ତ କୁମାର ଦାସ |
| ଲୋକମାନ୍ | ଶରତ ମହାନ୍ତି |
| ସତ୍ୟାନନ୍ଦ | ସତ୍ୟବ୍ରତ ମହାନ୍ତି |
| ସାମ୍ୱାଦିକ | ବ୍ରହ୍ମ |
| ପୁଲିସ୍ | ଗିରୀଜା ଶଙ୍କର କର |
| ମୋନାଲିସା/ବିନୋଦିନୀ : | ସୁମନା, |
| ଶିଶୁ ଶିଳ୍ପୀ : | କାହ୍ନୁ, ଇଟ୍ଟୁ, ଲିସା |
| ସଙ୍ଗୀତ | ମନୋରଂଜନ ପଣ୍ଡା, ନନ୍ଦକିଶୋର ଦାସ |
| ମଂଚ | ସନ୍ତୋଷ କମିଳା |
| ରଚନା ଓ ନିର୍ଦ୍ଦେଶନା : | ହେମେନ୍ଦ୍ର ମହାପାତ୍ର |

# ସ୍ମୃତି, ଏକ ଦୁଷ୍ଟାମିର

ଗୋପନଗର ବ୍ଲକ ଉନ୍ନୟନ ଅଧିକାରୀଙ୍କ ସରକାରୀ ବାସଗୃହ, ସମ୍ମୁଖରେ ସୁନ୍ଦର ଉଦ୍ୟାନ, ଦକ୍ଷିଣ ଦିଗରେ ଜଗୁଆଳୀ ଘର । ପଛ ପାଖରେ ଘରକୁ ରାସ୍ତା-

ଅଭିନୟ ଅଂଚଳ (୧) B.D.Oଙ୍କ ଘରର ସମ୍ମୁଖ (Exterier)

(୨) ବଗିଚା ଭିତରେ ଦୁଇ କିମ୍ୱା ତିନୋଟି ଚେୟାର

(୩) ଜଗୁଆଳୀ ଘରର ସମ୍ମୁଖ ଅଂଚଳ

(୪) ମୁଖ୍ୟ ଫାଟକ ଓ ତତ୍ ସଂଲଗ୍ନ ରାସ୍ତା

ସମୟ ସକାଳ

ରାତି ପାହିଯିବାର ସୂଚନା ଦୂର ଦେବାଳୟରୁ ମାଇକରେ ଶିବସହସ୍ର ନାମ ଅବା ଦୁର୍ଗା ସହସ୍ର ନାମ ଅସ୍ପଷ୍ଟ ଭାବରେ ଶୁଣାଯାଉଥାଏ । କୋଇଲି କୁଆମାନେ ସକାଳର ସୂଚନା ଦେବାମାତ୍ରେ ଭୋଳା ବିଛଣାରୁ ଉଠି ଫୁଲ ଗଜୁଡ଼ି ଓ ବାଉଁଶ କଣିର ଗୋଟିଏ ନଗାଧରି ଫୁଲ ତୋଳୁଥାଏ । ଗୋଟେ ଯୋଡ଼େ ଫାଇଲ ଧରି ଆସନ୍ତି ବ୍ଲକର ବଡ଼ବାବୁ ଜଗତ୍ ବାବୁ ।

ଜଗତ : ଏଁ ! ଇଏ କ'ଣ ? ସାଇବଙ୍କ ପହୁଡ଼ ତ ଉଠିନିନା କ'ଣ ଫେରିଯିବା ? ନାଇଁ ମ ଏତେବାଟ ଆସି ଫେରିଯିବି ନା ? ଚେଷ୍ଟା କଲେ କ୍ଷତି କ'ଣ ? ଆରେ ଏଇତ ଭୋଳାବାବୁ; ଭୋଳା; ଭୋଳାନାଥ (ହାତଠାରି ଡାକନ୍ତି)

ଭୋଳା : ଆରେ ବଡ଼ବାବୁ କୁହାର ହଜୁର

ଜଗତ୍ : ଆରେ ସାଆବ ଉଠିଲେଣି ?

(ଏହି ସମୟରେ B.D.O ଓମ୍ ପ୍ରକାଶ ପଟ୍ଟନାୟକ ବିଛଣାରୁ ମୋବାଇଲ ଧରି କଥା ହୋଇଆସନ୍ତି)

ଓମ୍ : ଆରେ ବାବା ହଁ ହଁ ମୁଁ B.D.O କହୁଛି.... ହଁ ହଁ ମୁଁ ନୂଆ ବିଡ଼ି ଓ ଓମ ପ୍ରକାଶ ପଟ୍ଟନାୟକ କହୁଛି । ହଁ ମୁଁ quarterରୁ କହୁଛି..... କ'ଣ କହିଲେ ? ଆପଣ quarterକୁ ଆସିବେ ? କ୍ଷମା କରିବେ ଆଜ୍ଞା ମୁଁ ଏବେ quarterରୁ ବାହାରି ଯାଉଛି... ଆପଣ ଦେଢ଼ଟା ପରେ ଅଫିସରେ meet କରନ୍ତୁ....ହଁ ହଁ.. ମୁଁ ଅଫିସରେ ପାଞ୍ଚଟା ପର୍ଯ୍ୟନ୍ତ ଅଛି । ok... (ଇତ୍ୟବସରରେ ଓମ୍ ଘରୁ ବାହାରି ବଗିଚା ପର୍ଯ୍ୟନ୍ତ ଆସିଯାଇଥା'ନ୍ତି ଏବଂ ଜଗତବାବୁ ମଧ୍ୟ ତାଙ୍କ ନିକଟକୁ ଆସି ପହଞ୍ଚି ଯାଇଥା'ନ୍ତି)

ଜଗତ୍ : ସାର୍ ନମସ୍କାର ।

ଓମ : ନମସ୍କାର । ଆରେ ବଡ଼ବାବୁ ଯେ; ଆଚ୍ଛା ବଡ଼ବାବୁ ଆପଣଙ୍କ ରାତି କ'ଣ ଏତେ ଶୀଘ୍ର ପାହିଯାଉଛି ?

ଜଗତ : କ'ଣ କରିବା ସାର୍; ଆପଣ ସିନା ହେଲେ ଅଫିସର ଲୋକ ଆପଣଙ୍କର ଆଠଟାରେ ରାତି ପାହିଲେ ଚଳିବ, ହେଲେ ମୁଁ ? ଆମେ ?

ଓମ୍ : ଆପଣଙ୍କର ରାତି କେତେବେଳେ ପାହେକି ?

ଜଗତ : ମୋର ରାତିହେଲେ ସିନା ପାହିବ ? ମୋର ରାତିଦିନ ସମାନ ।

ଓମ୍ : କାହିଁକି ?

ଜଗତ : ବଡ଼ବାବୁ ପରା, ପୁଣି ବ୍ଲକର ବଡ଼ବାବୁ । ହାତ ଯୋଡ଼ି ଯୋଡ଼ି ଇମିତି ଅଭ୍ୟାସ ହୋଇଗଲାଣି ଯେ ବାଟରେ ଘାଟରେ ଭିକାରୀମାନଙ୍କୁ ଦେଖିଲେବି ହାତ ଆପେଆପେ ଯୋଡ଼ିଯାଉଛି ।

ଓମ୍ : ହଉ ହେଲା, ଏତେ ସକାଳୁ ଆସିବାର ଉଦ୍ଦେଶ୍ୟ

ଜଗତ : ସାର୍ କଥା କଣକି, ଭୋରୁ ଭୋରୁ ତ୍ରେଜେରୀ ପିଅନର ଦେଖା ହୋଇଗଲା

ଓମ୍ : ତୋର୍‌ଗୁ ଟ୍ରେଜେରୀ ପିଅନ ? କ'ଣ ଇଚ୍ଛାକରି ଦେଖାକଲେ ନା ଇମିତି ଦେଖା ହୋଇଗଲା ।

ଜଗତ୍ : ଇଚ୍ଛା କରିକି ଯମକୁ କେହି କ'ଣ ଦେଖାକରେ ? ଏଇ morning walkରେ

ଓମ୍ : morning walk ?

ଜଗତ : ହଁ ସାର୍ ଏ ବ୍ଲଡ୍ ପ୍ରେସରଟା ମୋତେ ଘରିପାଞ୍ଜିରୁ ଉଠେଇ ଦେଲାଣି ଖାଲି ଏଇ morning walk ପାଇଁ ଟିକିଏ କଂଟ୍ରୋଲ୍‌ରେ ଅଛି ନହେଲେ –

ଓମ୍ : ଆପଣ ସନା ଦୁନିଆ ବୋଝ ମୁଣ୍ଡେଇ ଘଲିଛନ୍ତି ତେଣୁ ହୁଏତ ଆପଣଙ୍କୁ ବ୍ଲଡ ପ୍ରେସର ହୋଇପାରେ, ହେଲେ ଟ୍ରେଜେରୀ ପିଅନଟା, ତାର ବା କ'ଣ ଚିନ୍ତା ?

ଜଗତ୍ : ତାକୁ ବ୍ଲଡପ୍ରେସର କାହିଁକି ହେବ ସାର୍ ତାକୁ ପରା ଡାଇବେଟିସ୍

ଓମ୍ : ଡାଇବେଟିସ୍ ?

ଜଗତ୍ : କୁହନ୍ତୁନି ସାର ଡାଇବେଟିସ୍ ହୋଇ ଟିକେ ରକ୍ଷା କରିଦେଇଛି, ନହେଲେ ପ୍ରତି ବିଲ୍ ସାଂଗରେ ମିଠା ପେକେଟ ପୁଣି special, Compulsory ଥିଲାପରା ।

ଓମ୍ : ପ୍ରତି ବିଲ୍ ପଛରେ ମିଠା ।

ଜଗତ : ସେକଥା କହନ୍ତୁନି ସାର୍ salary billକୁ ସାଲେପୁରୀ, Arrier କଥା ତ ଦୁସରା ଆଗରୁ ଆମର ଏଇ ମହୀଦୋକାନ ମିଠାରେ ଚଳୁଥିଲା ଶେଷ ବେଳକୁ କେନ୍ଦ୍ରାପଡ଼ା ରସାବଳୀ ପର୍ଯ୍ୟନ୍ତ ପହଞ୍ଚିଗଲା । ଆଉ କଣ୍ଟିଜେନ୍‌ସି T.A. Bill ରେ କ୍ଷୀରଘେରାଙ୍କ ରାବିଡ଼ିଭୋଗ । ଏଇ ଦି'ମାସ ହେବ ଡାଇବିଟିସଟା ବଂଚେଇ ଦେଇଛି ନହେଲେ ଆଗକୁ ମାର୍ଚ୍ଚମାସ ପ୍ରଭୋ ଜଗନ୍ନାଥ ।

ଓମ୍ : ହେଲା, ପିଅନ ମହାଶୟଙ୍କ କଥାରୁ ମୋ ବସା ପର୍ଯ୍ୟନ୍ତ ଆସିବାର କାରଣ ?

ଜଗତ୍ : ସାର୍ ଆଜିଠୁ O.D. ମାନେ Over draft ଲାଗୁ ହୋଇଗଲା, ତେଣୁ ଗତକାଲିର dateରେ Billଟା ସିଗନାଚର କରି deposit କରିଦେଲେ Billଟା ଅନ୍ତତଃ ପାଶ ହୋଇଯିବ ବୋଲି ପିଅନଟା secret news ଦେଲାତ ସେଥିପାଇଁ

ଓମ୍ : ମୁଁ ଅଫିସ ଯାଇଥିଲେ ହୋଇ ନଥାନ୍ତା

ଜଗତ : ସେତେବେଳକୁ ଦଶଟା ବାଜି ଯାଇଥିବ, ଅଫିସରଙ୍କ ଟେବୁଲ୍‌ରେ date change ହୋଇଯାଇଥିବ ତେଣୁ O.D. ଲାଗିଯିବ

ଓମ୍ : ମାନେ ?

ଜଗତ୍ : ଅଫିସର ଆସିଲେ ଅଫିସ୍‌ରେ date change ହେବ O.D. ଲାଗିବ ବିଲ୍ ନିଆଯାଏନି ।

ଓମ୍ : ଅତଏବ୍ ଅଫିସର ଆସିବା ପୂର୍ବରୁ ଆମ Bill submit ହୋଇ ଯାଇଥିବ । ବାଃ ବଡ଼ବାବୁ ଆପଣଙ୍କୁ ମାନିବାକୁ ପଡ଼ିବ । ହଉ ଦିଅନ୍ତୁ କଲମ । (ହାତବଢ଼ାନ୍ତି)

ଜଗତ : ନିଅନ୍ତୁ ସାର୍

(ଜଗତ ଫାଇଲ ଖୋଲନ୍ତି ଓମ୍ ସିଗ୍ନାଚର କରନ୍ତି, ଆଲୋକ ସାମାନ୍ୟ କମିଯାଇ ଗେଟ୍ ପାଖରେ ଉଜ୍ଜ୍ୱଳ ହୁଏ । ଗେଟ୍ ଆଗପାଖରେ ଜ୍ୟୋତିଷ ସତ୍ୟାନନ୍ଦ ଉଙ୍କିମାରନ୍ତି ଏଣେତେଣେ ଚାହାନ୍ତି ଭୋଳା ଫୁଲ ତୋଳୁ ତୋଳୁ ଯାଏ)

ଭୋଳା : କ'ଣ ହେଲାକି ଆଜ୍ଞା ।

ସତ୍ୟାନନ୍ଦ : ଆରେ ୱାଚମେନ୍ ସାହାବ - ନୂଆ ହାକିମ ଆସିଲେଣି କି ?

ଭୋଳା : ହଁ ।

ସତ୍ୟାନନ୍ଦ : ଆସିଲେଣି, ତାହେଲେ ଭଲ ହେଲା ଟିକେ ଗେଟ୍ ଖୋଲନ୍ତୁନି

ଭୋଳା : କାହିଁକି ?

ସତ୍ୟାନନ୍ଦ : ଟିକେ ସାଇବଙ୍କୁ ଭେଟନ୍ତି

ଭୋଳା : ନା ନା ଏବେ ହେବନି

ସତ୍ୟାନନ୍ଦ : ନାଇ ନାଇଁ ମୋର କିଛି କାମ ଥିଲେ ମୁଁ ପରେ ଆସନ୍ତି ଏଟା ସାର୍‌ଙ୍କ କାମ

ଭୋଳା : କି କାମ

ସତ୍ୟାନନ୍ଦ : ଏଇ ତ ଓଲଟା କଥା କହିଲି ପରା ସାର୍‌ଙ୍କ କାମ ।

ଭୋଳା : କି କାମ

ସତ୍ୟାନନ୍ଦ : ଏଇ ତ ଓଲଟା କଥା କହିଲି ପରା ସାର୍‌ଙ୍କ କାମ ।

ଭୋଳା : ତମେ ଆପଣ କିଏ ?

ସତ୍ୟାନନ୍ଦ : ଓହ ତୁ ମୋତେ ଚିହ୍ନିନୁ ପରା, ମୁଁ ହେଲି ଜ୍ୟୋତିଷ ରତ୍ନ ପଣ୍ଡିତ ଭୂଷଣ ସତ୍ୟାନନ୍ଦ ଗ୍ରହାଚାର୍ଯ୍ୟ । ଏଇବାଟେ ଯାଉଥିଲି ଯେ ଦେଖିଲି ତମ ସାଇବଙ୍କ ଘରର ଦକ୍ଷିଣ ଦିଗରେ କାଉ ବସିଛି । କାଉଟା ଶନିଙ୍କ ବାହନ ତ ତେଣୁ....

ଭୋଳା : ଆମ ସାଇବ ସେଗୁଡ଼ା ସବୁ ମାନନ୍ତିନି । ତେଣୁ ସିଧା ପଳାଅ ।

ସତ୍ୟାନନ୍ଦ : ଏଇତ, ତମ ୱାଚମେନଙ୍କ ନେଚର - ଆରେ ସାଇବଙ୍କୁ କୁହ, ଆରେ ତମ ସାଇବତ ପିଲାଟେ ଭଳି ଦିଶୁଛନ୍ତି, ବାହାହୋଇ ନାହାନ୍ତି ବୋଧହୁଏ, ବଢ଼ିଆ କେଣ୍ଡିଡେଟ ଅଛି ଖୋଜ ଖୋଜ ।

ଓମ୍ : କ'ଣ ହେଉଛି ଭୋଳା

ଭୋଳା : ଜଣେ ଜ୍ୟୋତିଷ ଦେଖା କରିବାକୁ ଚାହୁଁଛନ୍ତି

ଓମ : ମନା କରିଦିଅ । ରେସିଡେନ୍‌ସେରେ ଦେଖା ହୋଇ ପାରିବନି

ଭୋଳା : ହେଲା, ମୁଁ କ'ଣ କହୁଥିଲି

ସତ୍ୟାନନ୍ଦ : ହଉ ତମ ଇଚ୍ଛା - ଯାଆନ୍ତି, ଭୋଳା ଗେଟ୍ ବନ୍ଦ୍ କରିଆସେ)
(ବଗିଚାରେ ସିଗ୍‌ନାଚର ଶେଷହୁଏ)

ଓମ୍ : ହେଲା, ଏଥର ଆସନ୍ତୁ ।

ଜଗତ୍ : ଆଜ୍ଞା (ଯାଉ ଯାଉ ଫେରିଆସେ) ସାର୍

ଓମ : କ'ଣ ହେଲା ?

ଜଗତ୍ : ସାର୍ ଆପଣଙ୍କର ଆଜି ନନ୍‌ଭେଜ୍ ଚଳେତ ?

ଓମ୍ : ମାନେ ?

ଜଗତ : ଆଜି ସୋମବାର କିନା..... ତେଣୁ....

ଓମ୍ : ଦେଖିବା, ଟେବୁଲ୍ ପାଖରେ ବସିଲେ ଚିନ୍ତା କରିବା

ଜଗତ୍ : ନାଇଁ ଜାଣିଗଲେ ଆଗରୁ ବନ୍ଦୋବସ୍ତ କରିଦିଅନ୍ତି ।

ଓମ୍ : ସେ କଥା ମୋ ଉପରେ ଛାଡ଼ିଦିଅନ୍ତୁ ।

ଜଗତ୍ : ନାଇଁ ସାର୍ ଭେଜ୍ ହେଲେ ତିନି ଘରିଟା prepare କରିବାକୁ ପଡ଼ିବତ ଟିକିଏ ଡେରି ଲାଗିପାରେ । ଆଉ ନନ୍‌ଭେଜ୍ ହେଲେ ସଂଗେ ସଂଗେ ତେଣୁ ମୁଁ କ'ଣ କହୁଥିଲିକି

ଓମ୍ : Please ଦୟାକରି ଆପଣ ଆଉ ଅଧିକ କିଛି କହନ୍ତୁନି । ମୋର ଉପାସ ରହିବାର ଅଭ୍ୟାସ ବି ରହିଛି ତେଣୁ ସେ ଟପିକ୍ ଛାଡ଼ନ୍ତୁ ।

ଜଗତ୍ : ସାର୍ ଆପଣ ଉପାସ ବି କରନ୍ତି ? ତାହେଲେ କହୁନାହାନ୍ତି ଆମ ଅଫିସ୍ ପଛପଟରେ ତ ଝାଡ଼େଶ୍ୱର ମନ୍ଦିର । ପାଣି ନୋଟାଏ ଢାଳିଦେଇ ସେଇଠୁ ପ୍ରସାଦ ବି ନେଇଆସିଲେ

ଓମ୍ : ଜଗତ୍ ବାବୁ ! ଆପଣଙ୍କୁ ଆଉ ଅଧିକ କହିବାକୁ ମୁଁ ଭଲ ଭାବୁନି ତେଣୁ ପ୍ଲିଜ୍ ଆପଣ ଆଉ ଅଧିକ କହିବା ମୁଁ ଭଲ ଭାବୁନି ତେଣୁ ଆପଣ ଏଥର ଆସିପାରନ୍ତି ।

ଜଗତ : ଆଜ୍ଞା ସାର୍ ଆଉ ଗୋଟେ କଥା ଭାରି Important ନହେଲେ କହନ୍ତିନି ।

ଓମ : ଏଇଟା ଯେମିତି ଶେଷକଥା ହୁଏ ।

ଜଗତ : ଆଜ୍ଞା କଥା କଣକି

ଓମ୍ : ଭୂମିକା ରଖନ୍ତୁ

ଜଗତ୍ : ଏଇ ଆମ ପଙ୍କଜ ବାବୁଙ୍କ ବିଲ୍‌ଟା କଥା କହୁଥିଲି

ଓମ୍ : ପଙ୍କଜ ବାବୁ ଓ ସେଇ ଯୋଉ ସ୍କୁଲ Building ?

ଜଗତ : ହଁ ଆଜ୍ଞା ।

ଓମ୍ : ଶୁଣନ୍ତୁ, ସେ ସ୍କୁଲର ହେଡମାଷ୍ଟର Complain କରିଛନ୍ତି । ମୁଁ ନିଜେ inquiry ନକଲେ ସେ ବିଲ୍ ହୋଇପାରିବନି ।

(ଏମିତିକଥା ହେଉ ହେଉହେଉ ଗେଟ୍ ପାଖରେ ପହଞ୍ଚନ୍ତି ପଙ୍କଜ)

ପଙ୍କଜ : ସାର୍ Morning

ଓମ୍ : Morning ଆପଣ ?

ଜଗତ୍ : ଆରେ ପଙ୍କଜ ବାବୁ ଯେ ନମସ୍କାର । ଏଇ ତ ଏଇ ସାଂଗେସାଂଗେ ଆପଣଙ୍କ କଥା ପଡ଼ିଥିଲା ।

ପଙ୍କଜ : (ହସି) ନମସ୍କାର ।

ଓମ୍ : ଓ, ଆପଣ ତାହେଲେ ପଙ୍କଜ ବାବୁ I mean ପଙ୍କଜ ପରିଡ଼ା

ପଙ୍କଜ : ଆଜ୍ଞା ଆଗରୁ ମୋ ବିଷୟରେ କିଛି କିଛି ଶୁଣି ସାରିଲେଣି ବୋଧହୁଏ ।

ଓମ୍ : ମୁଁ Request କରୁଛି Please ଆପଣମାନେ official କାମରେ residentକୁ ନଆସି ଅଫିସକୁ ଆସିଲେ ଭଲ ହୁଅନ୍ତା ।

ପଙ୍କଜ : ହଁ ହଁ କେବଳ ଗୋଟେ Courtsy shake ରେ ଆସିଥିଲି ।

ଓମ୍ : Ok ଆପଣ ଅଫିସରେ meet କରନ୍ତୁ ବଡ଼ବାବୁ ଆପଣ ଏଥର ଆସନ୍ତୁ; (ଭିତରକୁ ଯାଆନ୍ତି ଜଗତ ଓ ପଙ୍କଜ ବାହାରକୁ ଯାଆନ୍ତି ଆସନ୍ତି ମହେଶ ଓ ଲିସା)

ଜଗତ : ସାର୍ ଆପଣ; ନମସ୍କାର ସାର୍

ମହେଶ : ଆରେ ଜଗଦାନନ୍ଦ ତମେ;

ଜଗତ୍ : ସାର୍ ମୁଁ ପରା ଏବେ ବଡ଼ବାବୁ

ମହେଶ : ଆଚ୍ଛା ।

ଜଗତ୍ : ସାର୍ ସେଇ ଯୋଉ ଆପଣଙ୍କ ସମୟରେ ପୋଷ୍ଟିଂ ପାଇଥିଲି ଏବେ ଢେର ଢେର ସଂଗ୍ରାମ କରି ଆଜି ବଡ଼ବାବୁ । କିନ୍ତୁ ସାର୍ ଆପଣ ଏଠି ।

ମହେଶ୍ : ଏଇ ଓମ୍ ପ୍ରକାଶ ତମ B.D.O ପରା ମୋ ଢୋଇଁ ।

ଜଗତ୍ : ମାନେ ?

ମହେଶ୍ : ଏଇ ଲିସା, ମାନେ ସେତେବେଳେ ଛୋଟଥିଲା, ଲିସା; ଇଏ ଜଗଦାନନ୍ଦବାବୁ

ଲିସା : ନମସ୍କାର ।

ଜଗତ : ହଁ ମା ନମସ୍କାର.. ଆ.. ଇଏ...

ପଙ୍କଜ : ମୁଁ ପଙ୍କଜ...... ହେ..... ପଙ୍କଜ......

ଲିସା : ପଙ୍କଜ.... (ଯେମିତି ଘଡ଼ଘଡ଼ି ମାରେ)

ପଙ୍କଜ : ତାହେଲେ ଏବେ ଜମିଲା, ଆମର ଆଉ ଅସୁବିଧା କ'ଣ ? ଲିସା ଯେତେବେଳେ ଆମ B.D.O ସାରଙ୍କ ମିସେସ୍ (କିଛି ସମୟ ପାଇଁ ସମସ୍ତେ ଯେମିତି ନିସ୍ତବ୍ଧ)

ଜଗତ୍ : ଆସୁଛି ସାର୍ ନମସ୍କାର (ଯାଆନ୍ତି)

ପଙ୍କଜ : ଆସୁଛି Madam ନମସ୍କାର (ଯାଆନ୍ତି)

ଲିସା : Dady; ଏଇଟା କ'ଣ ସେହି quarter ?

ମହେଶ : ହଁ, ତୁ ପିଲାବେଳେ ଏଇଠି ଥିଲୁ, ମୁଁ ଏଇଠି B.D.O ଥିଲି ।

ଲିସା : ଏଟା ଯେମିତି ଥିଲା ସେମିତି ଅଛି, କିଛି ବି ପରିବର୍ତ୍ତନ ହୋଇନି ।

ମହେଶ : ତୋ ପିଲାବେଳର ସାଂଗମାନେ ବି ଅଛନ୍ତି । ହାୟ ସେଇଟା କାହ୍ନୁଘର

ଲିସା : କାହ୍ନୁଘର.... ? (ଉଦାସ ହୋଇଯାଏ)

ମହେଶ : ଆ ଭିତରକୁ ଯିବା

ଲିସା : ଏ ପଙ୍କଜଟା ବି ସେମିତି ଅଛି

ମହେଶ : ଥାଉ,

ଲିସା : ପିଲାବେଳେ ତ ନିହାତି ବଦମାସ ଥିଲା, ଏବେ କେମିତି ଥିବ କେଜାଣି ?

ମହେଶ : ସିଏ ତା'ର ଯାହାଥିବ ଥାଉ Adjust କରି ଚାଲିଯିବ ।

(ଆଗେଇ ଯାଆନ୍ତି, ଲିସା ଜଗୁଆଳୀ quarter ପାଖରେ ଅଟକିଯାଏ)

ଲିସା : Dady - ଏଇ quarterଟା

ମହେଶ : ହଁ watchman quarter, ସେତେବେଳେ ଭୋଳା, ଭୋଳା ବୋଲି ଜଣେ ଚୌକିଦାର ଥିଲା, (କହିକହି ଆଗେଇ ଯାଆନ୍ତି ଲିସା ଅଟକି ଯାଏ)

ଲିସା : ଇଏ ସେହି quarter...... (ଲିସାର ପିଲାଦିନ ନାଚିଉଠେ ଗୋଟେ ବଂଶୀ ସ୍ୱରରେ ଛନ୍ଦେ ଛନ୍ଦେ)

(ନାଚରେ କିଛି ସମୟ ବିତିଯାଏ, ଯା ଭିତରେ ଆସି ଲିସା ପାଖରେ ଛିଡ଼ା ହୁଅନ୍ତି ଓମ୍ ଲିସା ଜାଣିପାରେନି)

ଓମ୍ : (ଧିରେ) ଲିସା !

ଲିସା : (ହଠାତ୍ ଅପ୍ରସ୍ତୁତ ହୋଇ) ଏଁ ହଁ ନାଇଁ ?

ଓମ୍ : କ'ଣ ଦେଖୁଥିଲ ?

ଲିସା : ନା, ନାଇଁ ଏମିତି

ଓମ୍ : ଖୁବ୍ ନିବିଡ଼ ଭାବରେ ଦେଖୁଥିଲ, ନିଶ୍ଚୟ କିଛି....

ଲିସା : ନାଇଁ ପିଲାବେଳେ ଏଇଠି ଏଇ quarterରେ ଥିଲି ତ

ଓମ୍ : ଅନେକ ସ୍ମୃତି ରହିଥିବ ନିଶ୍ଚୟ, ସେଇଥିରୁ କିଛି...

ଲିସା : ନା, ସେମିତି କିଛି ନୁହେଁ, ତଥାପି...

ଓମ୍ : ତଥାପି ?

ଲିସା : ଏଇ ଯୋଉ quarter ଟା....

ଓମ୍ : Watchman quarter ଭୋଳା ରହେ ଭୋଳା ।

ଲିସା : ଭୋଳା ? ମାନେ ଭୋଳା ମଉସା ? ସେ ଏବେବି ଅଛନ୍ତି ।

ଓମ : ହଁ, ଭୋଳା ଭୋଳା ।

ଲିସା : ଭୋଳା ମଉସା; (ଭୋଳା ଫୁଲଧରି ଆସେ)

ଭୋଳା : କିଏ ?

ଲିସା : ମଉସା; ଭୋଳା ମଉସା; ତମେ ମୋତେ ଚିହ୍ନିପାରୁନ ? ମୁଁ ଲିସା ଲିସା

ଭୋଳା : ଲିସା ?

ଓମ୍ : (ଘଟଣାକୁ ସହଜ କରିବାକୁ ଯାଇ) ଇଏ ଲିସା ମୋ ମିସେସ୍ ମାନେ ସ୍ତ୍ରୀ ଆଉ ଇଏ ଭୋଳା ।

ଭୋଳା : ହଁ ଆଜ୍ଞା ମୁଁ ଭୋଳା, ଭୋଳା ଜଗୁଆଳୀ ଆଜ୍ଞା ।

ଓମ୍ : ମୋ ମିସେସ୍ ମାନେ ମାଡାମ ଆସିଛନ୍ତି ।

ଭୋଳା : ଏଁ; Madam ? Madam ଆସିଛନ୍ତି Madam ଜୁହାର ଆଜ୍ଞା

ଲିସା : ଭୋଳା ମଉସା ? ତମେ ? ତମେ ଏ କ'ଣ କରୁଛ ? ମୋତେ, ମୋତେ Madam କହି ହାତ ଯୋଡୁଛ ? ତମେ ତମେ କ'ଣ ମୋତେ ଭୁଲି ଯାଇଛ ?

ଭୋଳା : କିଏ ? ତମେ ଆପଣ କିଏ Madam ?

ଓମ୍ : ଆରେ କହିଲି ପରା ମୋ ସ୍ତ୍ରୀ ଲିସା; Oh ଲିସା ତମେ ତାକୁ ବୁଝାଅ ମୋର ଅଫିସ ସମୟ ହେବାକୁ ଯାଉଛି (ଯାଆନ୍ତି)

ଭୋଳା : ସାର୍‌ଙ୍କ ସ୍ତ୍ରୀ ଲିସା ।

ଲିସା : ହଁ ମଉସା, ମୁଁ ଲିସା ।

ଭୋଳା : ହଁ ମା ହଁ, ଏମିତି ଜଣେ ଲିସା ଥିଲା, ଟିକି ଝିଅଟେ ଭାରି ଅଝଟ, ଭାରି ଫୁଲେଇ, ହେଲେ ସିଏ ତ ଢେର ଛୋଟ ଥିଲା, ଢେରଦିନ ତଳେ ଏଠି ରହୁଥିଲା ।

ଲିସା : ମୁଁ ସେହି ଲିସା ।

ଭୋଳା : ଆପଣ ତମେ ସେହି ଲିସା ?

ଲିସା : ହଁ

ଭୋଳା : ଏଁ ସତ କହୁଛ ? (ପାଟିରୁ କଥା ବାହାରେନି ହାତଠାରି ପାଟି ପାକୁପାକୁ କରେ) ତମେ ଏତୁଟିଏରୁ ଏତେବଡ଼ ହୋଇଗଲଣି ? ମୋ ମାଲିକାଣୀ ହୋଇଗଲଣି ?

ଲିସା : ନା ମଉସା

ଭୋଳା : ନା କାହିଁକି, ହଁ କୁହ, ହଁ ।

ଲିସା : ଭୋଳା ମଉସା ତମର ସେଦିନ ମନେ ଅଛି ?

ଭୋଳାନାଥ : କୋଉ ଦିନଟା ମୋର ମନେ ନାହିଁ ମାଆ ? ସେ କଥା ଭାବିଲେ ମୋ ଛାତି ଫାଟି ଯାଉଚି ମୋ ହୃଦ ହାଣି ଯାଉଛି – ତମେ ନଥିଲେ କ'ଣ ମୁଁ ବଂଚି ଥାନ୍ତି ? (କାନ୍ଦି ପକାନ୍ତି)

ଲିସା : ଛି ମଉସା; ମୁଁ ପରା ଆସିଗଲିଣି ତମେ କାନ୍ଦୁଛ ? ଥାଉ କାନ୍ଦନା ମୁଁ ପରା ତମ ପାଖରେ ।

ଭୋଳା : ମାଆ;

ଲିସା : ଛି; ମଉସା; (ଭିତରୁ ଡାକନ୍ତି ଓମ୍)

ଓମ୍ : ଆରେ ମୁଁ ଅଫିସ ଯିବି ଯେ ?

ଭୋଳା : ମାଆ ସାର୍‌ଙ୍କ ସମୟ ହୋଇଯାଉଛି ।

ଲିସା : ମୁଁ ଆସୁଛି ମଉସା (ଆସନ୍ତି ମହେଶ୍)

ମହେଶ୍ : କିରେ ଲିସା, ତୁ ସେତେବେଳୁ ଏଇଠି, ଓମ୍ ତେଣେ ଅଫିସ୍ ଯିବାକୁ ବ୍ୟସ୍ତ ହେଲେଣି, ଓ ଭୋଳା; ଭୋଳାକୁ ପାଇଯାଇଛୁ ? ପୁରୁଣା କଥା ସବୁ ମନେପଡ଼ି ଯାଇଥିବ... ହଉ ହଉ ଏବେ ତ ଆସିଲୁ ଏଇଠି ତ ରହିବୁ କଥାହବୁ । ବ୍ୟସ୍ତ କାହିଁକି ଓମ୍ ଅଫିସ୍ ବାହାରି ଯାଆନ୍ତୁ ।

ଲିସା : ହଁ ହଁ ମୁଁ ଆସୁଛି ମଉସା;

ଭୋଳା : ଯାଅ ମା । (ଲିସାଯାଏ)

ମହେଶ : ଆଉ ଭୋଳା । ଚାକିରି ଆଉ କେତେବର୍ଷ ରହିଲା ?

ଭୋଳା : ବର୍ଷ କାହିଁ ଆଜ୍ଞା ଆଉ ତିନିମାସ

ମହେଶ୍ : ତିନିମାସ୍ ? ତିନିମାସ ପରେ ତୁ ବୁଢ଼ା ହୋଇଯିବୁ, ନାହିଁ ?

ଭୋଳା : (ହସି) ମୁଁ କ'ଣ ବୁଢ଼ା ହୋଇନାହିଁ ସାର୍ ?

ମହେଶ୍ : ଓହ ସରକାରୀ ଭାବରେ ବୁଢ଼ାହେବୁ ହେଲା, ଆଉ ଏଠିକା ଖବର କ'ଣ ?

ଭୋଳା : ଖବର ଆଉ କ'ଣ ହବ ସାର୍ । ସବୁ ସେମିତି ଯାହାଥିଲା । ଆପଣଙ୍କ ସମୟରେ ଯାହା ଏବେ ଜୋଇଁଙ୍କ ସମୟକୁ ବି ସେଇଆ ।

ମହେଶ : ଆଜ୍ଞା ମୁଁ ଯେ ଗଛଗୁଡ଼ା ଲଗେଇଥିଲି ଅଛିନା ?

ଭୋଳା : ଅଛି ମାନେ ? ବଡ଼ ବଢ଼ିଆ ଆମ୍ବ ଫଳୁଛି – ଏକଦମ୍ ମହୁପରି ମିଠା । ହେଲେ କ'ଣ ହେବ, ଏ ବାତରା ଟୋକାଗୁଡ଼ା କ'ଣ ରଖୁଛନ୍ତି ? ପାଚିବାକୁ ଦଉ ନାହାନ୍ତି ।

ମହେଶ : (ହସି) ହଉ ଖାଉଛନ୍ତି ତ, ଖାଆନ୍ତୁ, ଚଂପାଗଛ ?

ଭୋଳା : ଏଇ ପରା ସେହି ଗଛରୁ ଏବେ ଫୁଲ ତୋଳି ଆଣିଲି

ମହେଶ : ସତେ, ଚାଲିଲୁ ଚାଲିଲୁ ଗଛଗୁଡ଼ା ସବୁ କେମିତି ଅଛି ଦେଖିବା

ଭୋଳା : ଆସନ୍ତୁ (ଯାଆନ୍ତି) (ଆସନ୍ତି ଜଗତ)

ଜଗତ୍ : ଏ ଟ୍ରେଜେରୀ ଅଫିସ୍‌ବାଲାଙ୍କ ସଂଗରେ ପାରିହବନି, ଆଖି ତ ଖଣ୍ଡେ ଖଣ୍ଡେ ଧରି ବସିଛନ୍ତି ପିମ୍ପୁଡ଼ିଟେ ଛାଡ଼ିବେନି ।

ମହେଶ୍ : କ'ଣ କିଓ ଜଗଦାନନ୍ଦ ପୁଣି କ'ଣ ହେଲା ?

ଜଗତ୍ : କଣ୍ଟିନ୍ଜେନ୍ସି ବିଲ୍‌ରେ ଗୋଟେ ସିଗନାଚର ହୋଇନାହିଁ । କିରାଣୀଟା ଆଖିରେ ପଡ଼ିଗଲା, ନଛୋଡ଼ବନ୍ଧା ।

ମହେଶ : ହଉ ହେଲା, ତମେ ଥାଅ ମୁଁ ଟିକିଏ ବଗିଉଆଡ଼େ ଆସେ । ଆରେ ଲିସା ଓମ୍‌କୁ ଡାକିବେ ତାଙ୍କ ବଡ଼ବାବୁ ଆସିଛନ୍ତି । ଚାଲ ଭୋଳା (ଯାଆନ୍ତି) (କିଛି ସମୟ ପରେ ଓମ୍ ଆସନ୍ତି)

ଓମ୍ : ଆରେ ବଡ଼ବାବୁ; ପୁଣି କ'ଣ ହେଲା ?

ଜଗତ୍ : ଏଇଠି ଏଇ ବିଲ୍‌ରେ ସିଗ୍‌ନାଚରଟା ଛାଡ଼ି ଯାଇଛନ୍ତି ।

ଓମ୍ : ଏତେ ପରେ ବି ପୁଣି ରହିଗଲା ଆଣନ୍ତୁ - ଆରେ ପେନ୍ ଆଣନ୍ତୁ ।

ଜଗତ୍ : ପେନ୍ ? ମୋ ପେନ୍ ? ଆରେ ହେ ସେ ପଙ୍କଜଟା ତ ନେଇଥିଲା ସାରଙ୍କ ମୋବାଇଲ ନମ୍ବର ଲେଖିବା ପାଇଁ

ଓମ୍ : ପଙ୍କଜ ?

ଜଗତ୍ : ହୁଁ ସାର୍, ସେ କଣ୍ଟ୍ରାକ୍ଟର ପଙ୍କଜ ପରିଡ଼ା

ଓମ୍ : କାହା ମୋବାଇଲ୍ ନମ୍ବର ଲେଖିଲା ?

ଜଗତ୍ : ନାଇଁ ସାର୍ ମୁଁ କହୁ ନଥିଲି, ସେ ତ ଏକଦମ୍ ଗୋଡ଼ ହାତ ଧରି ପକେଇଲା । ଛାଡ଼ିଲାନି, ହଉ ହେଲା, ନମ୍ବର ତ ଲେଖିଲା, ତା'ସାଂଗରେ ପେନ୍‌ଟା ବି ନେଇଯିବନା ।

ଓମ୍ : ପେନ୍ ? ଲିସା ଲିସା

ଲିସା : (ଭିତରୁ) କ'ଣ ହେଲା ?

ଓମ୍ : ଗୋଟେ ପେନ୍ ଆଣିଲ ?

ଜଗତ୍ : ସାର୍ କଥା କଣକି ?

ଓମ୍ : କୁହନ୍ତୁ

ଜଗତ୍ : ମୁଁ କ'ଣ କହୁଥିଲିକି ?

ଓମ : କ'ଣ ?

ଜଗତ୍ : ବାହାଘର ବୋଧହୁଏ ।

ଓମ୍ : ଆଠମାସ ହେଲା

ଜଗତ୍ : ଆପଣଙ୍କ ଶଶୁର ଜଣେ ଭାରି ଭଲ ଲୋକ

ଓ ଓମ୍ ଭଲ ଲୋକ ନା ଛେନା ? ଘୋଷଖୋର ନମ୍ବରଓ୍ୱାନ୍

ଜଗତ୍ : ସାର୍ ଯାହା କହିଲେ ନା ଏକଦମ୍ ସତ ।

ଓମ୍ : କ'ଣ କହିଲେ ? (ଲିସା ଆସନ୍ତି)

ଲିସା : ପେନ୍ କାହିଁ ? କୋଉଠି ତ ନାହିଁ

ଓମ୍ : ସେଇଥିପାଇଁ ତ ତମକୁ ମାଗିଲି

ଲିସା : ମୋତେ ? ମୋର ପେନ୍ କାହିଁ ? ଆଉ ମୁଁ ବା କାହିଁକି ଅଧିକ ପେନ୍ ଆଣିବି ।

ଓମ୍ : ତମର ବି ପେନ୍ ନାହିଁ ?

ଜଗତ୍ : ତାହେଲେ ଏଇ ପାନ ଦୋକାନରୁ ଗୋଟେ ପେନ୍ କିଣିଆଣେ ।

ଓମ୍ : ହାଟ୍, ଲୋକେ କ'ଣ କହିବେ ? ନହେଲେ ତମ ସ୍ମରଣୀୟ କଲମଟା ଆଣ

ଲିସା : ସେ କଲମଟା ଉପରେ ତମର ସବୁବେଳେ ଆଖି ।

ଓମ୍ : ପେନ୍ ତ ଗୋଟେ ରଖିଛ କ'ଣ ନା ସେଥିରେ ଲେଖି ଓ:ଏ:ଏସ୍ ପାଇବ । ଆଣ ........

ଲିସା : ଆଣୁଛି, ହେଲେ ଏଇଠି ଯାହା ଲେଖୁଛ ଲେଖ ବାହାରକୁ ଦେବିନି ।

ଓମ୍ : ହଉ ହେଲା ଯାଅ ଆଣ ।

ଜଗତ୍ : ଖାଲି ସିଗ୍ନାଚର ଟେ ହବ ।

ଲିସା : ଯାହା ଲେଖୁଛ ଲେଖ ସାଂଗେସାଂଗେ କଲମଟା ନେଇଯିବି । (ଯାଏ)

ଜଗତ : Madam କଲମ ଉପରେ ଭାରି ସଉକ

ଓମ୍ : ନାଇଁ ଗୋଟେ ଶୁଭ କଲମ ତାଙ୍କର ଅଛି ଲକ୍ଷେଟଙ୍କା ମାଗିଲେ ଦେଇଦେବେ କଲମଟା ଦେବେନି ।

ଜଗତ୍ : ଗୋଟେ ସଉକ

ଓମ୍ : ସଉକ ନୁହେଁ ସ୍ମୃତି । ହଁ କ'ଣ କହୁଥିଲେ ବଡ଼ବାବୁ ମୋ ଶଶୁର ।

ଜଗତ୍ : ହଁ ସାର୍ ବଡ଼ ଘୋଷଖୋର୍ । କିଛି ଝଡ଼େଇଛନ୍ତି ନା ଭଲକରି ।

ଓମ୍ : କ'ଣ, ଯୌତୁକ ?

ଜଗତ୍ : ତାଙ୍କଠୁ ନନେଲେ ପାପ ହେବ ସାର

ଓମ୍ : ଆପଣ କାହା ଆଗରେ କ'ଣ କହୁଛନ୍ତି ଜଗତବାବୁ;

ଜଗତ୍ : ସତ କହୁଛି ସାର୍ ।

ଓମ୍ : ଆପଣ ହୋସରେ ଅଛନ୍ତି ତ ?

ଜଗତ୍ : ଏଁ ସରି ସାର୍ ସରି ଆପଣଙ୍କ ଶଶୁର ସାକ୍ଷାତ ଯୁଧିଷ୍ଠିର ସାର୍

ଓମ୍ : ଆପଣ କ'ଣ ଶକୁନି ? (ଲିସା ଆସେ)

ଜଗତ୍ : ଏଁ ହଁ ସାର୍, ନାସାର ଭୁଲ ହୋଇଗଲା ସାର୍ ।

ଲିସା : ନିଅ, ମୁଁ ଏଇଠି ଛିଡ଼ା ହଉଛି, ସିଗନାଚର କରିବ ମୋତେ କଲମ ଦବ ।

ଓମ୍ : ଏ କଲମଟାରେ ଇମିତି କ'ଣ ଅଛି ଯେ ଏତେ ପ୍ରେମ୍

ଜଗତ୍ : ଏଟା ତ ସେତେ ଦାମିକା କଲମ ନୁହେଁ ।

ଲିସା : ୟା ର ଦାମ କେତେ ମୁଁ ଜାଣେ

ଓମ୍ : ହଉ ହେଲା (ଦସ୍ତଖତ କଲେ) ନିଅବାବା ତମ ପେନ୍ ଦିଅ ।

(ଉଠନ୍ତି, ଲିସା ପେନ୍ ନେଇ ଭିତରକୁ ଯାଆନ୍ତି, ଗେଟ୍ ପାଖରେ ଲୋକମାନ ଆଓ ବିଦ୍ୟାଧର ବାବୁ ଆସନ୍ତି ଏମାନେ ଯାଆନ୍ତି)

ବିଦ୍ୟାଧର : ସାର୍ ନମସ୍କାର ।

ଓମ୍ : ହଁ ନମସ୍କାର, କ'ଣ ହେଲା ?

ବିଦ୍ୟାଧର : ସାର୍ ସେହି ସ୍କୁଲ Building କଥା

ଓମ୍ ହଁ ହଁ ଆପଣତ ଥରେ ଅଫିସକୁ ଆସିଥିଲେ, ମୁଁ କହିଥିଲି ଯାହା Complain ଅଛି ଲେଖିକରି ଦେବା ପାଇଁ ।

ବିଦ୍ୟାଧର : ମୁଁ ତ ଲେଖିକରି ଦେଇଛି ସାର୍ ।

ଓମ୍ : ଦେଇଛନ୍ତି ? କ'ଣ ଜଗତ୍ ବାବୁ; ଏ ସାର୍‌ଙ୍କର କଥା କ'ଣ ?

ଜଗତ : ନାଇଁ ସାର୍ କଥା ଆଉ କ'ଣ ହେବ, କଣ୍ଟ୍ରାକ୍ଟର ସାଙ୍ଗରେ କ'ଣ ଟିକିଏ ହିଚ୍‌କିଚ୍ ଚାଲିଛି ।

ଓମ୍ : କିଏ ସେ କଣ୍ଟ୍ରାକ୍ଟର ?

ଜଗତ : ଆମ ପରିଡ଼ା ବାବୁ ।

ଓମ୍ : ଆପଣଙ୍କ ପରିଡ଼ା ବାବୁ ? ମାନେ ପଙ୍କଜ ପରିଡ଼ା ?

ଜଗତ୍ : ହଁ ଆଜ୍ଞା ଏ ବ୍ଲକରେ ସେହି ଜଣେ କଣ୍ଟ୍ରାକ୍ଟର ଯାହା ସୁବିଧା ଅସୁବିଧାରେ ଭରସା ଦିଏ ।

ଓମ୍ : ଆଜି ଅଫିସ୍‌ରେ ମୋତେ ସେ ଫାଇଲ୍ ଦେଖେଇବେ । ମୁଁ ନିଜେ inquiryରେ ଯିବି, ସାର୍ ଆପଣ ଯାଆନ୍ତୁ ମୁଁ ନିଜେ inquiry କରି ସାରିଲେ ଯାହା କରିବି ।

ବିଦ୍ୟାଧର : ଆମେ ତ ସେଇଆ ଚାହୁଁଛୁ । ଆପଣ ନିଜେ ଦେଖନ୍ତୁ ତା'ପରେ ଯାହା ବିଚାର କରିବେ

ଓମ୍ : ଆସନ୍ତୁ, ଲୋକମାନ (ଲୋକମାନ ଆସେ) ଗାଡ଼ି କାହିଁ ?

ଲୋକ : ଏଇ ପରା

ଓମ୍ : ଚାଲ (ଲୋକମାନ ସହିତ ଓମ୍ ଆଗେଇ ଯାଆନ୍ତି)

ଜଗତ୍ : ହଇଓ ମାଷ୍ଟ୍ରେ; କାହିଁକି ଏମିତି ଜଡ଼ାତେଲ ପରି ଜଡ଼େଇ ଧରୁଛ ? ଯାଅ ମୁଁ ପରିଡ଼ାକୁ କହିଦେବି ସିଏ ମାଷ୍ଟ୍ରମାନଙ୍କୁ ନହେଲେ ଫିଷ୍ଟ ଦେଇଦେବ ।

ବିଦ୍ୟାଧର : ବୁଝିଲେ ଜଗତବାବୁ । ଆମେ ମାଷ୍ଟର ଦରମା ପାଉନୁ ସତ ଭୋକଉପାସରେ ଚଳୁଛୁ । ହେଲେ ମଧ୍ୟ ଆମେ ଶିକ୍ଷକ ଆମକୁ ଏମିତି ଲାଞ୍ଚୁଆ ହେବାର ପ୍ରଲୋଭନ ଦେଖାନ୍ତୁନି ।

ଜଗତ : ଇରେ ବାପାରେ, ହେଲେ ମାଷ୍ଟ୍ରେ ଯାହା କରୁଛ କର ଟିକିଏ ଦେଖି ଘଡ଼ିଁ କରୁଥିବ, ସିଏ ପଙ୍କଜ ପରିଡ଼ା ଗୋଟାପଣେ କଙ୍କଡ଼ା ବିଛା । (ଯାଆନ୍ତି)

ବିଦ୍ୟାଧର : ହଉ ଦେଖିବା, ଏ ମଣିଷ ତ ଫେର୍ ଗୋଖର ସାପର ଦାନ୍ତ ଭାଙ୍ଗିପେଡ଼ିରେ ପୁରେଇ ନଉଛି ଆଉ କଙ୍କଡ଼ାବିଛା କ'ଣ ତାଠୁ ଭୟଙ୍କର, ହଉ (ଯାଆନ୍ତି)

(ଘର ଭିତରୁ ଲିସା ବାହାରି ଆସେ ମୋବାଇଲଟା ଧରି)

ଲିସା : ଆରେ ହେ ମୋବାଇଲଟା ଭୁଲିଗଲେ, ଏମିତି ଭୁଲାମନ । ଭୁଲି ଯିବାଟା ଯେମିତି ଗୋଟେ ବାହାଦୁରୀ, (ଦେଖୁ ଦେଖୁ ରିଂ ହୁଏ) ଇଏ କିଏ ଫୋନ୍ କଲାଣି ଏବେ କ'ଣ କହିବି ? କିଏ କରିଥିବ ଚୁପ୍‌ଚାପ୍ ଶୁଣିଯାଏ ।

(on କରନ୍ତି)

(ରାସ୍ତାରେ ଗୋଟିଏ କ'ଣରେ ଦେଖା ଦିଅନ୍ତି ପଙ୍କଜ)

Hallow B.D.O. ସାବ୍ । ଗାଡ଼ିରେ ବସିଗଲା ପରେ ଫୋନ୍‌ଟା କରୁଛି । ଚିହ୍ନିଲେଣି ? ଟୋନ୍‌ରୁ ଜାଣିପାରୁଥିବେ, ନହେଲେ ବି ପରିଚୟଟା ଦେଇ ଦେଲେ ଚଳିଯିବ । ମୁଁ ପଙ୍କଜ କହୁଛି ପଙ୍କଜ ପରିଡ଼ା (ଲିସା react କରେ) ନାଇଁ ନାଇଁ ବିରକ୍ତ ହେବେନି କି ସୁଇଚ୍ ଅଫ୍ କରିବେନି । ମୁଁ ଏବେ ଆପଣଙ୍କୁ ଗୋଟେ important informantion ଦେବି । ଆପଣ ଜାଣି ଖୁସି ହେବେ ଅବଶ୍ୟ ମୁଁ

ଜାଣିଲା ମାତ୍ରେ ଖୁସିରେ ଆତ୍ମହରା ହୋଇଗଲି ଯେ, ଆପଣ ଲିସାଙ୍କୁ ମାନେ ମୋନାଲିସାଙ୍କୁ marriage କରିଛନ୍ତି ମୋନାଲିସା ଖୁବ୍ ସୁନ୍ଦର ଝିଅଟିଏ ମୋ କ୍ଲାସ୍‌ମେଟ୍ କିନା ନାଇଁ ନାଇଁ ଅନ୍ୟ କିଛି ଭାବବେନି, ମୋର ତା ସହିତ -

(ଲିସା ସହିପାରେନି)

ଲିସା : ପଙ୍କଜ

ପଙ୍କଜ : ଆରେ ଆରେ ମିଷ୍ଟର ପଟ୍ଟନାୟକଙ୍କ ମୋବାଇଲ ମିସେସ୍ ପଟ୍ଟନାୟକଙ୍କ ହାତରେ । Oh sorry very sorry.

ଲିସା : ପଙ୍କଜ ତୁ କ'ଣ ଭାବୁଛୁ କି ?

ପଙ୍କଜ : Sorry Sorry ଲିସା I am very sorry.

ଲିସା : ତୁ କ'ଣ କହିବାକୁ ଯାଉଥିଲୁ ମୁଁ ତୋ Class-mate

ପଙ୍କଜ : ଏଇଟା କ'ଣ ମିଛ ?

ଲିସା : Class-mate ର relation କେବଳ Class ଭିତରେ ସୀମିତ ।

ପଙ୍କଜ : ମୁଁ ତ ମନା କରୁନି ।

ଲିସା : ତାଙ୍କୁ ଏକଥା କହିବାର ମାନେ କ'ଣ ?

ପଙ୍କଜ : ସିଏ ଠିକ୍ ବୁଝିବେ, ବୁଝି ନ ପାରିଲେ ତୁମେ ତାଙ୍କୁ ବୁଝେଇ ଦବ, କାରଣ ତମେ ତ ବୁଝିଛ ନା

ଲିସା : ମନେରଖ ପଙ୍କଜ; ପିଲାଦିନର ପିଲାଳିଆମିକୁ ନେଇ -

ପଙ୍କଜ : ମୁଁ ତ ସବୁଦିନ ମନେରଖିଛି ଆଉ ରଖିବି ମଧ୍ୟ ହେଲେ ମିସେସ୍ ପଟ୍ଟନାୟକ ।

ଲିସା : Shut up (ଫୋନ୍ କାଟନ୍ତି) ଏ ରାସ୍କେଲ ପଙ୍କଜ ପରିଡ଼ା - (ମନେମନେ ଭାବନ୍ତି ବୁଲୁବୁଲୁ ବସି ପଡ଼ନ୍ତି ପଶିଆସନ୍ତି ପଙ୍କଜ)

ପଙ୍କଜ : Hallow ମିସେସ୍ ପଟ୍ଟନାୟକ

ଲିସା : କିଏ ଓ ପଙ୍କଜ ? ତୁ ?

ପଙ୍କଜ : ଧନ୍ୟ ହୋଇଗଲି Madam ଆପଣ ଏଯାଏ ନାଇଁ ମାନେ ତମେ ଏଯାଏ ମୋତେ ଏତେ ପାଖରେ ରଖି ପାରିଛ ।

ଲିସା : ମାନେ ?

ପଙ୍କଜ : ଏଇ ଯୋଉ 'ତୁ' କହିଦେଲ କେତେ ନିକଟ ସଂପକର୍ପୀୟ ହେଲେ ମଣିଷ ମଣିଷକୁ ତୁ କହିଥାଏ ।

ଲିସା : ଆଉ ଏକଥା ସତ ଯେ ମଣିଷ ଅନ୍ୟ ଜଣେ ମଣିଷକୁ ଘୃଣାରେ ବି ତୁ କହିଥାଏ ।

ପଙ୍କଜ : ଘୃଣାଟା ବି ବେଳେବେଳେ ଭଲ ପାଇବାର ଭିତ୍ତି ପକାଇଥାଏ ।

ଲିସା : Shut up ! ତୁ ଭୁଲିଯାଉଛୁ ।

ପଙ୍କଜ : Madam ଜଣେ Class 1 officerଙ୍କ wife ବୋଲି

ଲିସା : ତେଣୁ ଶିଷ୍ଟାଚାରକୁ ସମ୍ମାନ ଦେଇ ଆସିପାରୁ ।

ପଙ୍କଜ : ଆସିବି ତ ନିଶ୍ଚୟ, ହେଲେ ତମେ କ'ଣ ଏକଥା ଅସ୍ୱୀକାର କରିପାରିବ ଯେ ଆମେ ଦୁହେଁ ପିଲାଦିନରେ ବଂଧୁ

ଲିସା : ଏଇଟା ପିଲାଦିନ ନୁହେଁ ।

ପଙ୍କଜ : ମୁଁ କ'ଣ ଜାଣେନି ? ହେଲେ ପିଲାଦିନର ସେ ପିଚୁଲି ଘେରି, ଡାଳମାଙ୍କୁଡ଼ି ଖେଳ, ଗୁପ୍‌ଚୁପ୍ ଖିଆ କ'ଣ ଏତେ ସହଜରେ ଭୁଲିହେବ । ତମର କାହ୍ନୁକଥା କ'ଣ ମନେ ନଥିବ ? ଆଚ୍ଛା ସେ କଲମଟା, ସେଟା କ'ଣ ହଜେଇ ଦେଇଛ ?

ଲିସା : ପଙ୍କଜ; ଯିବୁ ନା ।

ପଙ୍କଜ : ଦରୱାନ ଡାକିବ ? ହେଲେ Madam ହଲ୍ଲାହବ, ଚନ୍ଦ୍ରରେ କଳଙ୍କ ଲାଗିବ ସିନା ଲାଭ କିଛି ହେବନି ।

ଲିସା : ତା'ମାନେ... ତୁ କ'ଣ କହିବାକୁ ଚାହୁଁ ?

ପଙ୍କଜ : ମୁଁ ଜଣେ କଣ୍ଟ୍ରାକ୍ଟର ଆଉ ମିଷ୍ଟର ପଟ୍ଟନାୟକ ଜଣେ B.D.O.

ଲିସା : ସେସବୁ Official matter

ପଙ୍କଜ : ସେହି Official matter କୁ ସହଜ କରିବାପାଇଁ ଟିକିଏ I mean push back ତ ଦରକାର·ନା ।

ଲିସା : ନାଇଁ ତାଙ୍କ କାମରେ ମୁଁ Interfice କରିପାରିବିନି ।

ପଙ୍କଜ : ତୁ ତ ଜାଣୁ ପଙ୍କଜ ପରିଡ଼ା କେବେ ମୁଣ୍ଡ ଝୁଙ୍କି, ଗୋଡ଼ଭାଙ୍ଗି request କରି ଶିଖିନି - ପରିସ୍ଥିତି ପାଇଁ ସେ ସବୁ କିଛି କରିପାରେ Ok (ଯାଏ) (thought ଭାଙ୍ଗିଯାଏ)

ଲିସା : (ଚମକି ଉଠେ) ନା; ଏ ପଙ୍କଜକୁ ବିଶ୍ୱାସ କରି ହେବନି - ଇଏ ନିଶ୍ଚୟ ମୋତେ Blackmail କରିବ, କ'ଣ ନାଇଁ କ'ଣ Problem creats କରିବ । ୟା ସାଂଗରେ ଟସ୍‌ଲ୍ କରି ପାରି ହେବ ? Compromise କରି ଚଳିଯିବା ବୁଦ୍ଧିମାନର କାର୍ଯ୍ୟ ଆରେ ହଁ ମୋବାଇଲ୍‌ରେ ତ ତା'ର ନମ୍ବର ରହିଥିବ, ତାକୁ ଡାକି ଆଣି ଗୋଟେ (dial କରନ୍ତି) Hallow ପଙ୍କଜ; ମୁଁ ଲିସା କହୁଛି ।

- ଅଂଧାର -

# ଦ୍ୱିତୀୟ ଦୃଶ୍ୟ

(ସମୟ ପ୍ରାତଃକାଳ । ପାଚେରୀ ଆରପଟ ରାସ୍ତାକୁ ଆଲୋକ ଆସେ, ଦେଖାଯାଏ morning walk ରେ ଲୋକମାନେ ଯାଉଥା'ନ୍ତି । ଏହି ସମୟରେ ବ୍ରହ୍ମପୁତ୍ର ମିଶ୍ର ନାମକ ସାମ୍ବାଦିକ ଗୋଟେ କେମେରା ଧରି ଏମାନଙ୍କ ଫଟୋ ଉଠଉଥାଆନ୍ତି)

ବ୍ରହ୍ମ : ଆଜ୍ଞା...ଆଜ୍ଞା ଟିକିଏ ଶୁଣିବେକି ଆଜ୍ଞା; ଆପଣ; ହଁ ଆଜ୍ଞା ଆପଣ କହିବେକି ଆଜ୍ଞା ଏତେ ସକାଳୁ ପୁଣି ଏତେ ଶୀତରେ ଆପଣ ଏମିତି କୁଆଡ଼େ ଦୌଡ଼ୁଛନ୍ତି । ଆରେ କଥା କ'ଣ, କେହି ଶୁଣୁ ନାହାନ୍ତି, ସମସ୍ତେ ଏକମୁହାଁ ହୋଇ ଅଣନିଃଶ୍ୱାସୀ ଭାବରେ ଏମିତି କୁଆଡ଼େ ଦୌଡ଼ୁଛନ୍ତି ? (ଆସନ୍ତି ସତ୍ୟାନନ୍ଦ)

ସତ୍ୟାନନ୍ଦ : ପାଗଳ ଆଜ୍ଞା ପାଗଳ, ସମସ୍ତେ ପାଗଳ ଯମକୁ ଫାଙ୍କିଦେବା ପାଇଁ ଏ ଦୌଡ଼ । ଆରେ ତମ କପାଳରେ ଯଦି ମୃତ୍ୟୁଥିବ ତାହେଲେ ଏ ମର୍ଣିଂୱାକରେ ଯେତେ ଦୌଡ଼ିଲେ କ'ଣ ନିସ୍ତାର ପାଇଯିବ ?

ବ୍ରହ୍ମ : ଆଜ୍ଞା ଆପଣଙ୍କ ପରିଚୟ ।

ସତ୍ୟାନନ୍ଦ : ଆଜ୍ଞା ଆମ୍ଭେ ସତ୍ୟାନନ୍ଦ ଗ୍ରହାଚାର୍ଯ୍ୟ ଜ୍ୟୋତିଷବିଶାରଦ ପଣ୍ଡିତ ଭୂଷଣ ।

ବ୍ରହ୍ମପୁତ୍ର : ଇରେ ବାବାରେ ଇଏ ତ ଏକଦମ୍ ତୋ

ସତ୍ୟାନନ୍ଦ : ଆଜ୍ଞା ଆପଣ ବି ଏମାନଙ୍କ ଭଳି ବାତୁଳ ହୋଇ ଦୌଡ଼ୁଛନ୍ତି ।

ବ୍ରହ୍ମ : ନାଇଁ ନାଇଁ ଏଇ morning walk ଉପରେ ଗୋଟେ ପ୍ରୋଗ୍ରାମ ସୁଟିଂ କରୁଥିଲି ତ ।

ସତ୍ୟାନନ୍ଦ : ଆଜ୍ଞା ଏଟା ଗୋଟେ ଫେସନ, ନହେଲେ ଏଥିରେ କିଛି ଲାଭ ନାହିଁ । ଗ୍ରହ ଖରାପ ନପଡ଼ିଲେ ଲୋକେ ରୋଗରେ ପଡ଼ନ୍ତିନି ଆଉ ରୋଗରେ ପଡ଼ିଲେ ଔଷଧ ଖାଆନ୍ତି ନହେଲେ ଗ୍ରହ ଶାନ୍ତି ପାଇଁ ଆମ୍ଭ ପାଖକୁ ଆସନ୍ତି । ଏମିତି ବାରବର୍ଷ ଦୌଡ଼ିଲେ କ'ଣ ରୋଗ ପଳେଇବ । ଗ୍ରହ ନକଟିଲେ ରୋଗ ହଟିବନି ।

ବ୍ରହ୍ମ : ତା'ହେଲେ ଆପଣ କାହିଁକି ଦୌଡୁଛନ୍ତି ?

ସତ୍ୟାନନ୍ଦ : ମୁଁ ଦୌଡ଼ିବି ? କ'ଣ ପାଗଳ ହୋଇଛି ।

ବ୍ରହ୍ମ : ଆଉ ?

ସତ୍ୟାନନ୍ଦ : ଗ୍ରହନ୍ତୁ ଦେଖିବେ (ଆସନ୍ତି morning walk ରେ ଜଗତ୍ ବାବୁ) ଆଜ୍ଞା ସାର୍ ନମସ୍କାର

ଜଗତ୍ : ହଁ ହଁ ନମସ୍କାର, ମୁଁ ଏବେ duty ରେ ନାହିଁ, ଯାହା କହିବ ଅଫିସକୁ ଆସ

ସତ୍ୟାନନ୍ଦ : ନାଇଁ ସାର୍, ଏ ବାସ୍ତବରେ ଏ ବପୁଧରି କାହିଁକି ପାଗଳ ହଉଛନ୍ତି

ଜଗତ୍ : ମାନେ ?

ସତ୍ୟାନନ୍ଦ : ଆପଣଙ୍କ ଭାଗ୍ୟ କହୁଛି ଆପଣ ଶୁକ୍ର ପ୍ରଭାବରୁ ମଧୁମେହ ରୋଗରେ ପିଡ଼ୀତ ।

ଭଗତ : ଏଁ ! ଶୁକ୍ର ପ୍ରଭାବରୁ ମୋତେ ମଧୁମେହ; ନାଇଁ ହେ ମୋତେ ବ୍ଲଡ଼୍‌ପ୍ରେସର ।

ସତ୍ୟାନନ୍ଦ : ମଧୁମେହ ପରା ବ୍ଲଡ଼୍‌ପ୍ରେସରର ମାମୁଁ ପୁଅ ଭାଇ, ନିଜଭାଇ ହୋଇଥିଲେ ହୁଏତ କଳିକରି ପାଖ ପଶନ୍ତାନି ଏ ମାମୁଁ ପୁଅ ଭାଇ ଜଣେ ଆସିଲେ ପଛେ ପଛେ ଆଉ ଜଣେ ଆସିଯିବ ।

ଜଗତ : ସେଇଥିପାଇଁ ତ ଏ morning walk

ସତ୍ୟାନନ୍ଦ : କିଛି ହବନି, morning walkରେ ଯଦି ବ୍ଲଡପ୍ରେସର ଛାଡ଼ିଯାଆନ୍ତା ତା'ହେଲେ ଗ୍ରହରାଜ ବୃହସ୍ପତି ଆତ୍ମହତ୍ୟା କରିଦିଅନ୍ତେ । ଏ

ରୋଗର ଏକମାତ୍ର ଔଷଧ ଏହି ଏକମୁଖୀ ରୁଦ୍ରାକ୍ଷ । ଗୋଟିଏ ମାତ୍ର ପିନ୍ଧନ୍ତୁ ସାରାଜୀବନ ଶାନ୍ତିରେ ରହନ୍ତୁ ।

ଜଗତ : ଗୋଟେ ରୁଦ୍ରାକ୍ଷରେ ସାରା ଜୀବନ ଶାନ୍ତି ?

ସତ୍ୟାନନ୍ଦ : ପରୀକ୍ଷା କରନ୍ତୁ । କଲେକ୍ଟର ଅଫିସରେ ପରା ଗୋଟେ ପେକେଟ ରୁଦ୍ରାକ୍ଷ ସରିଗଲା ଏ ରୁଦ୍ରାକ୍ଷ ଏଠିକାର ନୁହେଁ । ପୁରା ଗନ୍ଧମାର୍ଦ୍ଦନରୁ ଆଣିଛି ।

ଜଗତ୍ : ହଉ ଦାମ କେତେ ?

ସତ୍ୟାନନ୍ଦ : ଆପଣଙ୍କଠୁ କ'ଣ ବେଶୀ ନେବି କିଣାଦାମ୍‌ରେ ନେଇଯାଆନ୍ତୁ, ଶହେ ଟଙ୍କା ହଉଛି, ହଉ ଆପଣ ଯେତେବେଳେ ନେବେ ଅଣୀରେ ନେଇ ଯାଆନ୍ତୁ ।

ଜଗତ : ମୋ ପାଖରେ ସୁଦ୍ଧୁ ପଚିଶ ଟଙ୍କିଆଟେ ଅଛି ।

ସତ୍ୟାନନ୍ଦ : ପଚିଶ ଟଙ୍କା, ହାତରୁ ଖସିଯିବ, ଦେଖୁନାହାନ୍ତି ଆଉ ଦଶ ପନ୍ଦର ଯଦି ଥିବ ।

ଜଗତ : ନାଇଁ ଆଉ ଗୋଟେ ଆଠିଣିବି ନାହିଁ ।

ସତ୍ୟାନନ୍ଦ : ହଉ ହେଲା ନହେଲେ ନେଇଯାଆନ୍ତୁ, ସବୁବେଳେ କ'ଣ ଲାଭ କରିହେବ । ଥରେ ନହେଲେ କ୍ଷତି ହେବ ନେଇଯାଆନ୍ତୁ ।

ଜଗତ୍ : କି ? କି ? କ୍ଷତି କାହିଁକି ହେବ ? ମୁଁ ତମର କିଏକି ? ମୋ ସାଂଗରେ ତମର ଏତେ ପ୍ରେମ କାହିଁକି ? ଶହେ ଟଙ୍କାର ରୁଦ୍ରାକ୍ଷ ପଚିଶ ଶଙ୍କାରେ ଦେଇ ଦେବ .ଏଁ ?

ସତ୍ୟାନନ୍ଦ : ନାଇଁ ଆଜ୍ଞା

ଜଗତ୍ : ଆରେ ବ୍ରହ୍ମାଚର୍ଯ୍ୟ; ଭୁଲ୍ ଜାଗାରେ ନଜର ପକେଇଦେଲ, ମୋତେ ତମେ ଚିହ୍ନିନ । ବ୍ଲକ ଅଫିସର ବଡ଼ ବାବୁଟି, ରାତି ପାହିଲେ ଗୋଠ ଗୋଠ ଧପ୍‌ପାବାଜ ଟାଉଟରଙ୍କୁ ଚରଉଛୁ । ମୋତେ ପାରିବନା ? ଏଁ

ବ୍ରହ୍ମ : ଧନ୍ୟବାଦ

ଜଗତ : ମାନେ ?

ବ୍ରହ୍ମ : ଆମେ ବ୍ରହ୍ମପୁତ୍ର ମିଶ୍ର ଡୋ ଟି.ଭି.

ଜଗତ : ଟି.ଭି. ବାଲା ? ନାଇଁ ନାଇଁ ତମକୁ ପାରିବିନି ।

ବ୍ରହ୍ମ : ଆଜ୍ଞା ମାତ୍ର ଗୋଟେ ପ୍ରଶ୍ନ

ଜଗତ : ଆଜ୍ଞା ନମସ୍କାର ଦଶଟାବେଳେ ଅଫିସକୁ ଆସନ୍ତୁ ଯେତେ ପ୍ରଶ୍ନ କରିବେ ସବୁ ଉତ୍ତର ଦେଇଦେବି - (ଯାଆନ୍ତି)

ବ୍ରହ୍ମ : ହଉ ବଡ଼ବାବୁ; ଦେଖିବେ ଆଗାମୀ କାଲି ଆଞ୍ଚଳିକ ସମ୍ବାଦରେ । ଏମିତି ଲାଂଚ ଖାଇଖାଇ ଚର୍ବି ବଢ଼େଇବେ ଶେଷରେ ଯମ ଡରରେ ଦୌଡ଼ି ଦୌଡ଼ି ଚର୍ବି ଝଡ଼େଇବେ

ସତ୍ୟାନନ୍ଦ : ଯାହା କହିଲେ ଏକଦମ୍ ଠିକ୍ କଥା ।

ବ୍ରହ୍ମ : ତାହେଲେ ଆପଣ ଏଇ ବେପାର କରନ୍ତି ।

ସତ୍ୟାନନ୍ଦ : ନା ଆହୁରି ଢ଼େର ଚିଜ ଅଛି, ଏଇ ଦୌଡ଼ ପ୍ରେମୀ ପାଗଳମାନଙ୍କୁ ସତ୍ ପଥକୁ ଆଣିବା ପାଇଁ ମୋ ପାଖରେ ରୁଦ୍ରାକ୍ଷ, ତାବିଜ, ଡ଼େଉଁରିଆ, ଯନ୍ତ୍ରିକା ଆଦି ବହୁ ପରୀକ୍ଷିତ ଜିନିଷମାନ ଅଛି ଯିଏ ଖୋଜିବ ଆପଣ ମୋ ପତ୍ତା ବତେଇଦେବେ । ଆପଣଙ୍କୁ ଗୋଟେ ହନୁମାନ ତାବିଜ ଦେବି । ହାତରେ ପିନ୍ଧି ବାହାରିବେ ଯାହା ଚାହିଁବେ ତାହା ପାଇବେ । ବୁଝିଲେ ଆଜ୍ଞା ସ୍ୱର୍ଗରୁ ଅପ୍‌ସରା ଆସି ଗୋଡ଼ ତଳେ ପଡ଼ିବେ ।

ବ୍ରହ୍ମପୁତ୍ର : ସ୍ୱର୍ଗରୁ ଅପସରା ଆସିବେ ? ହଉ ଦେଖିବା ପରୀକ୍ଷା କରିବା । ଯଦି ସତ୍ୟ ପ୍ରମାଣିତ ହେବ ମୁଁ ଲକ୍ଷେ ଟଙ୍କା ଦେବି ଆଉ ଯଦି ମିଛ ହୁଏ ।

ସତ୍ୟାନନ୍ଦ : ହଉ ହଉ (ଚୁପ୍‌କିନା ଖସିଯାଏ)

ବ୍ରହ୍ମପୁତ୍ର : କ'ଣ ହେଲା ଗ୍ରହାଗ୍ରର୍ଯ୍ୟେ ? (ଦେଖି ହସନ୍ତି) ହାୟ ହାୟ ବଂଚିବା ପାଇଁ କି ଦୟନୀୟ ଅବସ୍ଥା - ଆଗକୁ ଯିବା ଆଉ କ'ଣ କ'ଣ ଘଟୁଛି ଦେଖିବା (ଯାଆନ୍ତି, ବିପରୀତ ଦିଗରୁ ପୁଲିସ୍ ସତ୍ୟାନନ୍ଦଙ୍କୁ ଧରିନେଇ ଆସନ୍ତି)

ପୁଲିସ୍ : ଆଁ ହାଁ ହାଁ କୁଆଡ଼େ ? କୁଆଡ଼େ ? ଖସିଯାଉଛ

ସତ୍ୟାନନ୍ଦ : ନାଇଁ ଆଜ୍ଞା ଖସୁନି - ସମସ୍ତେ ଯୁଆଡ଼େ ଯାଉଛନ୍ତି morning walkରେ

ପୁଲିସ୍ : morning walk ? ମୋତେ ଭୁତଉଛ ? morning walk ରେ ତ ଲୋକମାନେ ହାତଗୋଡ଼ ଛାଟି ମିଲଟାରୀ କାଇଦାରେ ଦୌଡୁଛନ୍ତି ଆଉ ତମେ କାହିଁକି ଚୋରଙ୍କ ଭଳି କୁନୁକୁନୁ ହୋଇ ପଳଉଥିଲ ଫେରେ ମୋତେ ଦେଖିକରି ?

ସତ୍ୟାନନ୍ଦ : ନା, ଜମା ନୁହେଁ, ଆଖି ଛୁଉଁଛି, ଏକାସାଂଗରେ ଦି'ଆଖି ଛୁଉଁଛି । ମୁଁ ଆପଣଙ୍କୁ ଦେଖି ନଥିଲି ।

ପୁଲିସ୍ : ହଉ ହେଲା, ଦେଖି ନଥିଲ ତ ଏବେ ଦେଖିଲ ?

ସତ୍ୟାନନ୍ଦ : ହଁ ଆଜ୍ଞା

ପୁଲିସ୍ : କୁହ ଦେଖି ମୁଁ କିଏ ?

ସତ୍ୟାନନ୍ଦ : ଆପଣ ? ଆପଣ ହେଉଛନ୍ତି ଏ ରାଜ୍ୟର ସବୁଠାରୁ ସାହସୀ ଜମାଦାର

ପୁଲିସ୍ : ହଁ ଠିକ୍ କହିଛ ।

ସତ୍ୟାନନ୍ଦ : କେମିତି ଜାଣିଲି ପଚାରୁ ନାହାନ୍ତି ।

ପୁଲିସ୍ : ପଚାରିବି ?

ସତ୍ୟାନନ୍ଦ : ଆରାମରେ ପଚାରନ୍ତୁ ।

ପୁଲିସ୍ : କେମିତି ଜାଣିଲ ଜ୍ୟୋତିଷ ବିଶାରଦ ସତ୍ୟାନନ୍ଦ ଗ୍ରହାଗ୍ରର୍ଯ୍ୟ

ସତ୍ୟାନନ୍ଦ : ମାନେ ? ଆପଣ ମୋ ନା କେମିତି ଜାଣିଲେ ?

ପୁଲିସ୍ : ପୁଲିସ୍ ପରା, ଚୋରଙ୍କୁ ନ ଚିହ୍ନିଲେ ପେଟ ପୋଷିବି କେମିତି ?

ସତ୍ୟାନନ୍ଦ : ଚୋର ?

ପୁଲିସ୍ : ମନେ ନାହିଁ ? ସେଦିନ ଥାନାରେ, ଯୋଉ ତାବିଜ ଦେଇଥିଲ ।

ସତ୍ୟାନନ୍ଦ : ହଁ ହଁ, ଆଉ ଭଲନା ? ତାବିଜ କେମିତି କାମ କରୁଛି ।

ପୁଲିସ୍ : ମୋତେ କହିଥିଲ କି ଏ ତାବିଜ ପିନ୍ଧିଲେ ସ୍ତ୍ରୀ ବଶ ହେବ ଗୋଡ଼ ତଳେ ପଡ଼ିବ

ସତ୍ୟାନନ୍ଦ : ଗୋଡ଼ତଳେ ପଡ଼ିବମାନେ ଦିନରାତି ଚବିଶ ଘଣ୍ଟା ଗୋଡ଼ ଧରିବ ।

ପୁଲିସ୍ : କିନ୍ତୁ ତାବିଜ ପିନ୍ଧିଲା ମାତ୍ରେ ସେ ଆଉ ଗୋଡ଼କୁ ଆଡ଼ ଆଖିରେ ବି ଚାହୁଁନି ।

ସତ୍ୟାନନ୍ଦ : ଆଉ ?

ପୁଲିସ୍ : ମୋ ଝୁଟି ଛଡ଼ା ତା'ର ଆଉ କଥା ନାହିଁ, ହୁଁ କଥାକୁ ମୋ ଝୁଟି ଧରି ଘୋଷାରୁଛି । ସେହିଦିନୁ ତମକୁ ଖୋଜୁଥିଲି ଆଜି ପାଇଗଲି । ଚାଲ ଥାନାକୁ ଚାଲ ଝୁଂକେ ଛେଚିଦେଲେ ହିସାବ ବରାବର ହୋଇଯିବ । ଚାଲ

ସତ୍ୟାନନ୍ଦ : ସେ ତାବିଜ ତ ଫେଲ ହେବାର ନୁହେଁ,

ପୁଲିସ୍ : ଖାଲି ଫେଲ୍ ତ ହେଲାନି ବରଂ ଓଲଟିଗଲା ।

ସତ୍ୟାନନ୍ଦ : ଓଲଟିଗଲା ? ଓହ ସେ ତାବିଜଟା କିଏ ପିନ୍ଧିଲା କି ?

ପୁଲିସ୍ : ମୁଁ ଏଇ ମୋ ଡାହାଣ ହାତରେ ପିନ୍ଧିଛି ।

ସତ୍ୟାନନ୍ଦ :- ସେଇଥିପାଇଁ ଆପଣ ଗୋଡ଼ ଧରିଲେ, ସେ ସ୍ତ୍ରୀଲିଂଗ ତାବିଜ, ସ୍ତ୍ରୀ ପିନ୍ଧିବା କଥା ଆପଣ ପିନ୍ଧି ପକେଇବେ ହେବ କେମିତି ଓଲଟା କାମ କରିବ ଇ କରିବ ।

ପୁଲିସ୍ : ସେକଥା କହୁନ ? ହଉ ଆଜି ସ୍ତ୍ରୀଙ୍କୁ ପିନ୍ଧାଏ ତା'ପରେ କାଲି ଏଇ ମଣିଂଓ୍ୱାକରେ କଥା ।

ସତ୍ୟାନନ୍ଦ : ଆପଣ କାହିଁକି ମଣିଂଓ୍ୱାକରେ ଆସୁଛନ୍ତି

ପୁଲିସ୍ : ମଣିଂଓ୍ୱାକରେ ନଆସିଲେ ଘରେ ବାହାରେ ଝାଡୁ ମାରିବାଠୁ ବିଛଣା ଝାଡ଼ିବା ବାସନ ମାଜିବା ପର୍ଯ୍ୟନ୍ତ ସବୁ କାମ କରିବାକୁ ପଡ଼ିବ ସେଥିରୁ ରକ୍ଷା ପାଇବା ପାଇଁ ବ୍ଲଡ୍‌ପ୍ରେସର ଆଳରେ ମଣିଂଓ୍ୱାକରେ ପଳେଇ ଆସୁଛି ।

ସତ୍ୟାନନ୍ଦ : ଆ ହା ହା ନିଜେ ଆଇନ ରକ୍ଷକ ହୋଇ ନିର୍ଯ୍ୟାତିତ ହେଉଛନ୍ତି ।

ପୁଲିସ୍ : ଧିରେ କୁହ, ନହେଲେ ପୁଲିସ ଧରିନବ,

ସତ୍ୟାନନ୍ଦ : ହଉ ଆଜ୍ଞା ନମସ୍କାର (ଖସି ଯାଆନ୍ତି, ଆସନ୍ତି ପଙ୍କଜ)

ପୁଲିସ୍ : ଆଜ୍ଞା ନମସ୍କାର

ପଙ୍କଜ : କ'ଣ କି ଏତେ ସକାଳୁ ?

ପୁଲିସ୍ : କୁହନ୍ତୁନି ସାର୍, ଏ ଖେରଗୁଡ଼ାଙ୍କୁ ନିଦ ନାହିଁ, ଏବେ ଭୋରୁ ଉଠି morning walkରେ ଦୌଡ଼ି ସେଇଥିରୁ ଚେନ୍ ଛିଣ୍ଡେଇବା ଆରମ୍ଭ କରି ଦେଇଛନ୍ତି ।

ପଙ୍କଜ : ତେଣୁ ତମର ନିଦ ଶୀଘ୍ର ଭାଂଗୁଛନ୍ତି ? ହଉ ଯାଅ ମୁଁ ଟିକିଏ B.D.O ସାବ୍‌ଙ୍କୁ ପାଖକୁ ଆସିଛି । (ଭିତରକୁ ପଶନ୍ତି, ପୁଲିସ୍ ଯାଏ)

ପଙ୍କଜ : (ଏଣେ ତେଣେ ଚାହାନ୍ତି, ଭୋଳା ଆସେ)

ଭୋଳା : କ'ଣ ହେଲାକି ଆଜ୍ଞା

ପଙ୍କଜ : ସାର୍ ଉଠିଲେଣି ?

ଭୋଳା : ହଁ (ଆସନ୍ତି ଓମ୍)

ଓମ୍ : କିଏ ଆସିଛି ?

ପଙ୍କଜ : ଆଜ୍ଞା ନମସ୍କାର

ଓମ୍ : କ'ଣ ହେଲା ? ଏତେ ସକାଳୁ ? ମୁଁ ପରା କହିଥିଲି

ପଙ୍କଜ : ଅଫିସ୍‌ରେ ଦେଖା କରିବାକୁ, ମୁଁ କିନ୍ତୁ Official କାମରେ ଆସିନାହିଁ

ଓମ୍ : Official କାମରେ ଆସିନାହାନ୍ତି ? ଆଉ ?

ପଙ୍କଜ : ଆଜି ଆମ ପୋଖରୀରେ ମାଛଧରା ହେଉଥିଲାତ ସୁନ୍ଦର ରୋହୀମାଛଟେ ପଡ଼ିଲା, ନେଇ ଆସିଲି ।

ଓମ୍ : No, ନେଇଯାଆନ୍ତୁ ସେ ଭୁଲ୍ ଆପଣ କେବେ କରିବେନି । ଆପଣ ଯାଆନ୍ତୁ ଯାଆନ୍ତୁନା, ନା, ଆଉ ଅଧିକ କିଛୁ କହନ୍ତୁନି ।

ପଙ୍କଜ : କ'ଣ ଏମିତି ଯାଆନ୍ତୁ ଯାଆନ୍ତୁ କହୁଛନ୍ତି ? ମୁଁ କ'ଣ ନିଜେ ନିଜେ ଆସିଛି ? ଆପଣଙ୍କ ଫୋନ୍ ପାଇ ଆସିଛି ।

ଓମ୍ : ମୋ ଫୋନ୍ ? ମିଛକଥା ।

ପଙ୍କଜ : ଆପଣଙ୍କ ମୋବାଇଲ ଦେଖନ୍ତୁ, ନହେଲେ ମୋ ମୋବାଇଲ ଦେଖିପାରନ୍ତି ।

ଓମ୍ : ମୋ ମୋବାଇଲ୍‌ରୁ ? କିଏ ଫୋନ୍ କରିଥିଲା ।

ପଙ୍କଜ : ଲିସାମାନେ Mrs Pattanayak, ମୋ Classmate

ଓମ୍ : ଲିସା ଆପଣଙ୍କ Classmate

ପଙ୍କଜ : ତେଣୁ ଏ ମାଛ.....

(ଓମ୍ ଫେରି ପଡ଼ନ୍ତି ଅଂଧାର)

## ଦ୍ୱିତୀୟ ଦୃଶ୍ୟ

(ସମୟ ସଂଧ୍ୟା ଆସନ୍ନ, ଗାର୍ଡ୍ନ ଚେୟାରରେ ବସିଥା'ନ୍ତି ପଙ୍କଜ ଓ ଲିସା । ଉ' ପିଉପିଉ ହସି ଉଠନ୍ତି ।)

ଲିସା : କ'ଣ, ହସିଲୁ ଯେ;

ପଙ୍କଜ : ତୋ କଥାରେ ନହସି ରହି ପାରିଲିନି ।

ଲିସା : କାହିଁକି, ତୋର କ'ଣ age ହୋଇନି

ପଙ୍କଜ : ଅବଶ୍ୟ ତୋ ମତରେ ହୁଏତ ମୋର age ହୋଇ ଯାଇଛି କିନ୍ତୁ ବେଗ୍ ଧରି ବଜାର ଯିବା, ମୁହଁ ଶୁଖେଇ ଲେବର ରୁମ୍ ଆଗରେ ପଇଁତରା ମାରିବାର ସମୟ ଆସିନି, ତା'ଛଡ଼ା ପକେଟର ଓଜନ ସେତେ ବେଶୀ ହୋଇନି, ବିଶେଷକରି ଆଜିକାଲିକା ଝିଅମାନଙ୍କୁ ପ୍ରେମିକା ଭାବରେ ଯେତେ ଚିଟ୍ କରୁଛୁ କର, ମାତ୍ର ଥରେ ସ୍ତ୍ରୀ ଭାବରେ ଗ୍ରହଣ କରିନେଲେ ସାରା ଜୀବନ ଚିଟ୍ ହେଉଥିବ ଅର୍ଥାତ୍ ଯାବତ୍ ଜୀବନ କାରାଦଣ୍ଡ ବୋଲି ଧରି ନିଆଯାଉ ।

ଲିସା : ଆଚ୍ଛା ?

ପଙ୍କଜ : ଅବିଶ୍ୱାସ ହେଲେ ମିଷ୍ଟରଙ୍କୁ ବୁଝିନେବୁ ।

ଲିସା : ନାଇଁ ତୋତେ କାହିଁକି ଅବିଶ୍ୱାସ କରିବି ।

ପଙ୍କଜ : ଆଉ ତୋ marriage life କେମିତି ?

ଲିସା : ତୋ ଭାଷାରେ ସେହି ଆଜୀବନ କାରାଦଣ୍ଡ ।

ପଙ୍କଜ : ତାମାନେ.... You are not happy (ପଶିଆସନ୍ତି ଓମ୍)

ଲିସା : ମୁଁ marriage କରି ଭୁଲ୍ କରିଛି ।

ଓମ୍ : ଅଂଧାରରେ ବସିଛ ସଂଧ୍ୟା ହୋଇଗଲାଣି, light ଜଳଉନ ।

ଲିସା : ଆରେ ଓମ୍ ଯେ !

ଓମ୍ : କ'ଣ disturbe କଲି ?

ପଙ୍କଜ : ଆଜ୍ଞା ନମସ୍କାର

ଓମ୍ : ନମସ୍କାର ମିଷ୍ଟର ପରିଡ଼ା । କ'ଣ କିଛି କାମ ଥିଲା ?

ଲିସା : ସେ କହୁଥିଲା....

ଓମ୍ : ତାଙ୍କ Billଟା ପାଶ୍ କରି ଦବାକୁ

ପଙ୍କଜ : ଆପଣତ ଜାଣନ୍ତି ।

ଓମ୍ : ଯାହାତ ଆଗରୁ ଜାଣିଥିଲି ଏବେ ଆହୁରି ଅଧିକ ଜାଣିବାର ସୁଯୋଗ ମିଳିବ ।

ପଙ୍କଜ : ଆସନ୍ତୁ - ଲିସା ସାର୍‌ଙ୍କୁ ଚ'

ଲିସା : ନାଇଁ ସେ ଏବେ ପିଇବେନି - ନା ପିଇବ ?

ଓମ୍ : ନାଇଁ ପରେ ପିଇବି

ଲିସା : ପଙ୍କଜ ତା' ଫାଇଲ୍‌ଟା କଥା କହୁଥିଲା ।

ଓମ୍ : ହେଲା, ତମେ କହିଲଣି ମାନେ ଫାଇଲ ଆଣିବେ ।

ପଙ୍କଜ : ଫାଇଲଟା ଅବଶ୍ୟ ମୋ ସାଙ୍ଗରେ ଅଛି ।

ଓମ୍ : ଆଣିଛନ୍ତି ? ତା'ହେଲେ.... ହଉ ଆଣନ୍ତୁ ଦେଖିବା -

ପଙ୍କଜ : ଏଇ ସେ ଫାଇଲଟା - (ବ୍ୟାଗ୍‌ରୁ କାଢ଼ି ଦିଅନ୍ତି)

ଓମ୍ : (ଫାଇଲ ଦେଖି ପେନ୍ ଖୋଜନ୍ତି) ପେନ୍ ? ପେନ୍ କାହିଁ ?

ଲିସା : ପେନ୍ ନାହିଁ ତ ? ମୁଁ ପରା ଜାଣେ ଦିନକୁ ଘରି ପାଞ୍ଚଟା ପେନ୍ ଯଦି ନ ହଜାଇଲ ତା'ହେଲେ କି ଅଫିସର

| | | |
|---|---|---|
| ପଙ୍କଜ | : | ମୋ ପକେଟରେ ବି ପେନ୍ ନାହିଁ । |
| ଓମ୍ | : | ଆଉ କ'ଣ କରିବା, ତମରି ପେନ୍‌ଟା ଦିଅ । |
| ଲିସା | : | ସେହି ପେନ୍‌ଟାରେ ତମର ମନ ରହିଛି (ଯାଏ ଭିତରକୁ) |
| ପଙ୍କଜ | : | Excuse me |
| ଓମ୍ | : | No ଆପଣ ଜାଣନ୍ତିନି ବୋଧେ ମୁଁ ମୋ କାମରେ କାହାରି ପ୍ରେସର ବା interfierenceକୁ toloret କରିପାରେନି । |
| ପଙ୍କଜ | : | କଥା କ'ଣକି । |
| ଓମ୍ | : | No, (ଲିସା ପେନ୍ ନେଇ ଆସେ) |
| ଲିସା | : | ନିଅ । |
| ଓମ୍ | : | (ପେନ୍ ନେଇ ଦେଖନ୍ତି) |
| ପଙ୍କଜ | : | ଆରେ ଏଇଟା ବୋଧେ ସେହି କଲମ ? ନୁହେଁ ଲିସା । |
| ଲିସା | : | ହଁ |
| ପଙ୍କଜ | : | ଏତେ ଦିନଯାଏ ଅଛି ? |
| ଲିସା | : | ମୁଁ ରଖିଛି ବୋଲି ସିନା । |
| ପଙ୍କଜ | : | ଯା ହଉ ସ୍ମୃତିଟା ଯତ୍ନରେ ରଖିଛୁ । |
| ଲିସା | : | ସେଦିନର ସ୍ମୃତି କ'ଣ ଭୁଲିହୁଏ ? |
| ଓମ୍ | : | (କଲମକୁ ଧରି ଯେମିତି ଢଳି ଯାଉଥା'ନ୍ତି, ହଠାତ୍ ବାହାନା କରି) I am sorry. ଆଜି Evening ରେ Collector ଙ୍କ Chamberରେ ଗୋଟେ Emergency ମିଟିଂ ଥିଲା, ମୁଁ ତ ଏକଦମ୍ ଭୁଲିଯାଇଛି, କିଛି Mind କରିବେନି ମୁଁ just ଆସୁଛି, ଏ ଫାଇଲଟା ଆଉ ଥରେ ଦେଖିନେଇ Sign କରିଦେବି । (ଧଡ଼କିନା ଉଠି ଯାଆନ୍ତି) (କିଛି ସମୟ ପାଇଁ ସବୁକିଛି ଚୁପଚାପ) |

ପଙ୍କଜ : ପଟ୍ଟନାୟକ ବାବୁ ହଠାତ୍ ?

ଲିସା : ତାଙ୍କ Nature ସେଇଆ ଯାହା କରନ୍ତି ଏମିତି ହଠାତ୍

(ଓମ୍ ଗେଟ ପାଖରେ)

ଓମ୍ : ଲୋକମାନ୍; ଲୋକମାନ୍

ଲୋକମାନ : ସାର୍ ।

ଓମ୍ : ଋବି ? (ହାତ ବଢ଼ାନ୍ତି)

ଲୋକମାନ : ଗାଡ଼ି Back କରିଦେଇଛି ସାର୍

ଓମ୍ : ମୁଁ ପଋରୁଛି, ଋବି କାହିଁ ?

ଲୋକମାନ : ଆପଣ କ'ଣ ନିଜେ drive କରିଯିବେ ?

ଓମ୍ : କ'ଣ ହେଲା ସେଇଠୁ ? ଋବି ମାଗୁଛି ପରା ।

ବିଦ୍ୟାଧର : ନାଇଁ ସାର୍, ଆପଣ ପରା ଆଜି inquiryରେ ଯାଇଥାନ୍ତେ

ଓମ୍ : କ'ଣ ହେଲା ସେଇଠୁ ? ଆପଣ କ'ଣ Collector ନା Chief secretary ମୋତେ Explanation ମାଗିଲା ଭଳିଆଙ୍କ ପ୍ରଶ୍ନ କରୁଛନ୍ତି, ମୁଁ ସେ Bill ପାଶ୍ କରି ଦେଇଛି inquiry ଦରକାର ନାହିଁ । ଯାହା Complain କରିବାର ଅଛି କରନ୍ତୁ (ଆଗେଇ ଯାଆନ୍ତି)

ବିଦ୍ୟାଧର : ହେଲେ

ଲୋକମାନ : ଓହ ସାର୍ ଏବେ ଟେନ୍‌ସନ୍‌ରେ ଅଛନ୍ତି ପରେ ଆସନ୍ତୁ (ଗାଡ଼ି ଷ୍ଟାର୍ଟ ହୁଏ ଲୋକମାନ ବ୍ୟସ୍ତ ହୋଇ ଦୌଡ଼େ)

ବିଦ୍ୟାଧର : ଏମାନେ କି ଅଫିସର ? କହନ୍ତି ଗୋଟେ ଆଉ କରନ୍ତି ଆଉ ଗୋଟେ (ତାଙ୍କରି ଯିବା ବାଟକୁ ଋହିଁ ରହିଥାନ୍ତି, ଇତିମଧ୍ୟରେ ପଙ୍କଜ ପାଖେଇ ଆସେ ।

| | | |
|---|---|---|
| ପଙ୍କଜ | : | କ'ଣ ସାର୍ B.O.D.ଙ୍କ କ୍ବାଟର ପର୍ଯ୍ୟନ୍ତ ପହଞ୍ଚି ଗଲେଣି ? |
| ବିଦ୍ୟାଧର | : | B.O.D. କ'ଣ, ଦରକାର ପଡ଼ିଲେ କଲେକ୍ଟର ପାଖକୁ ଯିବି, ମନ୍ତ୍ରୀ ପାଖକୁ ଯିବି ଏମିତିକି ମୁଖ୍ୟମନ୍ତ୍ରୀ ଗଭର୍ଣ୍ଣର ପର୍ଯ୍ୟନ୍ତ ଯିବି, ଛାଡ଼ିବିନି । |
| ପଙ୍କଜ | : | ଆପଣ ଯାହା କଲେବି ମୋ Bill ଅଟକେଇ ପାରିବେନି । |
| ବିଦ୍ୟାଧର | : | ତୁ ଏ ହାଡ଼ ଦି'ଖଣ୍ଡର କରାମତି ଜାଣିନୁ ପଙ୍କଜ |
| ପଙ୍କଜ | : | ଗୋଟିଏ ସିଗ୍ନାଚରରେ ଏମିତି କେତେ ହାଡ଼ ଭାଂଗିଯିବ । |
| ବିଦ୍ୟାଧର | : | ତୁ ଭୁଲିଯାଉଛୁ ପଙ୍କଜ ଏ ହାଡ଼ ଦି'ଖଣ୍ଡ ସେ ହାତକୁ ସିଗନାଚର ଶିଖାଇଛି । (ଇତି ମଧ୍ୟ ଲିସା ଗେଟ୍ ପାଖରେ ପହଞ୍ଚି ଯାଇ ବିଦ୍ୟାଧରଙ୍କୁ ଚିହ୍ନିବାକୁ ଚେଷ୍ଟା କରୁଥାଏ) |
| ଲିସା | : | ସାର୍.... ଆପଣ... ? |
| ପଙ୍କଜ | : | ହଁ ବିଦ୍ୟାଧର ସାର୍, ଯିଏ ପାଠ ପଢ଼ଉଥିଲାବେଳେ ଏମିତି କେତେ ଆଦର୍ଶବାଦୀ କଥା କହୁଥିଲେ କିନ୍ତୁ ପ୍ରକୃତ ଜୀବନରେ ଜମେ ସ୍ୱାର୍ଥପର ଧପ୍‌ପାବାଜ । |
| ଲିସା | : | ପଙ୍କଜ ? ତୁ କାହାକୁ କ'ଣ କହୁଛୁ ? ସାର୍ ନମସ୍କାର । |
| ବିଦ୍ୟାଧର | : | ତମେ... ତମେ କିଏ, ମୁଁ ଚିହ୍ନି ପାରୁନି ମା' ? |
| ଲିସା | : | ମୁଁ ଲିସା, ମୋନାଲିସା ମହାନ୍ତି । ଆପଣଙ୍କ ଛାତ୍ରୀ । B.O.D. ମହେଶ ମହାନ୍ତିଙ୍କ ଝିଅ । |
| ବିଦ୍ୟାଧର | : | ମହେଶ ମହାନ୍ତି ଓ ମୋନାଲିସା । |
| ଲିସା | : | ହେଲେ ଏ ସବୁ.... ପଙ୍କଜ ? ତୁ କ'ଣ ସାର୍‌ଙ୍କୁ ଚିହ୍ନି ପାରୁନୁ ? |
| ପଙ୍କଜ | : | ଚିହ୍ନି ପାରିବିନି ? ମୁଁ ପରା ତାଙ୍କ ପ୍ରତିଲୋମକୁ ଚିହ୍ନିଛି । ତୁ ହୁଏତ ଚିହ୍ନି ନଥିବୁ । ଚିହ୍ନିବାକୁ ଚେଷ୍ଟା କର, ନହେଲେ କହିବୁ ଯଦି, ମୁଁ ଚିହ୍ନେଇ ଦେବି । |

ଲିସା : ପଙ୍କଜ; ସାର୍‌ଙ୍କୁ ଏମିତି କ'ଣ କହୁଛୁ ?

ବିଦ୍ୟାଧର : ତା' ମୁହଁରେ ଭାଷା ଶିଖେଇଛି ହାତରେ ଖଡ଼ି ଧରେଇଛି ସିଏ ଯଦି ଶଳା ବଦ୍‌ମାସ୍ କହି ମୋତେ ଦକ୍ଷିଣା ନ ଦେବ, ମୁଁ ଗୁରୁ ଦକ୍ଷିଣା ପାଇବି କେମିତି ?

ପଙ୍କଜ : ଆ ହା ହା ଭାଷା ଶିଖାଇଛନ୍ତି ? ଖଡ଼ି ଧରେଇଛନ୍ତି, ଲାଜ ନାହିଁ ଆପଣଙ୍କୁ ଆପଣ ଯଦି ମୋର ଶିକ୍ଷକ ତା'ହେଲେ ମୋ ନାଆଁରେ Complain ଦେଇଥାନ୍ତେ ମୋ ବିଲ୍ ପାଶ୍ କରେଇ ଦେଇ ନଥାନ୍ତେ ?

ବିଦ୍ୟାଧର : Complain କାହିଁକି କରିଛି ? ମୁଁ ମୋ ଘର ପାଇଁ ତ Complain କରିନି ସ୍କୁଲ ଘରଟା, ଖାଲି ବାଲି ଦେହରେ ମୁଠେ ମୁଠେ ସିମେଣ୍ଟ ସିଞ୍ଚି ଦେଇ ଛାତ ପକେଇ ଦେଲୁ ମୁଁ ଯେତେ କହିଲି ମାନିଲୁନି । ଛୋଟ ଛୋଟ ପିଲା ବସିବେ, ତାଙ୍କ ମୁଣ୍ଡ ଉପରେ ଯଦି ଛାତଟା ଗଳିପଡ଼ିବ ? ତାହେଲେ ? ଫଳ କ'ଣ ହେବ ? ମୁଁ ଦେଖୁ ଦେଖୁ ଏ ଅନ୍ୟାୟ ସହି ଯିବି ? ତେଣୁ Complain କରିଛି ।

ପଙ୍କଜ : ମିଛ କଥା, ମୁଁ ଆପଣଙ୍କୁ ପର୍ସେଣ୍ଟେଜ ଦେଲିନି ବୋଲି ଆପଣ Complain କରିଛନ୍ତି ।

ବିଦ୍ୟାଧର : ପଙ୍କଜ ?

ପଙ୍କଜ : ସେ ନାଲି ଆଖି ଆଉ କାହାକୁ ଦେଖେଇବ ।

ବିଦ୍ୟାଧର : ଚୁପ୍ କର, ତୋ ଗାଲରେ ଖୋଜିଲେ ଏବେବି ମୋ ହାତର ଦାଗ ଥିବ ।

ପଙ୍କଜ : କ'ଣ କହିଲେ ? (ଭିଡ଼ି ଆସନ୍ତି)

| | | |
|---|---|---|
| ବିଦ୍ୟାଧର | : | ହଁ ହଁ ଏ ହାତରେ ଏବେବି ସେ ତାକତ ଅଛି, ତୋଭଳି ଗୁଣ୍ଡା ବଦ୍‌ମାସ୍‌ମାନଙ୍କୁ ଗୋଟେ ଗୋଟେ ଚ'ପଡ଼ାରେ ସାବାଡ଼ କରିଦେବି । |
| ପଙ୍କଜ | : | Complain ? (କଲର ଧରି ନିଅନ୍ତି) |
| ଲିସା | : | (ଅତ୍ୟଧିକ ରାଗିଯାଇ) ପଙ୍କଜ ? (ଚ'ପଡ଼ା ମାରିଲେ) ତୁ... ତୁ ସାର୍‌ଙ୍କ କଲର ଧରିଲୁ ପୁଣି ମୋ ଆଗରେ । |
| ବିଦ୍ୟାଧର | : | ଲିସା; (ପଙ୍କଜ ଆଶ୍ଚର୍ଯ୍ୟର ଗାଲରେ ହାତଦେଇ ଚାହିଁଥାଏ ପଙ୍କଜ ଲିସାକୁ ଚାହିଁଥାଏ, ପରିସ୍ଥିତି ସଂପୂର୍ଣ୍ଣ ଗମ୍ଭୀର ହୋଇଯାଏ, ଦୂରରୁ ଶୁଣାଯାଏ ସର୍ପକ୍ରୂର ଖଳକ୍ରୂର ସର୍ପାତ୍ କ୍ରୂରତର ଖଳ..... ଅଂଧାର ହୋଇଯାଏ ପୁଣି ଆଲୋକ ଆସିଲା ବେଳକୁ ଦେଖାଯାଏ ମହେଶ ଏପଟ ସେପଟ ହେଉଥା'ନ୍ତି ଘଡ଼ି ଦେଖୁଥାଆନ୍ତି, ଏହି ସମୟରେ ପାଖ Fire station ରୁ ଦଶଟା ବାଜିବାର ଘଣ୍ଟା ଶୁଣାଯାଏ ।) |
| ମହେଶ | : | ଏଁ ଦଶଟା ବାଜିଗଲା; ଏ ପର୍ଯ୍ୟନ୍ତ କ'ଣ ମିଟିଂ ଚାଲିଥିବ । କ'ଣ ହେଲା ? ଭୋଲା ଭୋଲା; (ଭୋଲା ଆସେ) |
| ଭୋଲା | : | ସାର୍ |
| ମହେଶ | : | କିରେ ତମ B.D.O. କାହାନ୍ତି ? |
| ଭୋଲା | : | ସାର୍ ଏପର୍ଯ୍ୟନ୍ତ ଫେରି ନାହାନ୍ତି ? |
| ମହେଶ | : | ଦଶଟା ବାଜିଲାଣି |
| ଭୋଲା | : | ସାର୍‌ଙ୍କର ତ କେବେ ଏମିତି ଡେରି ହୁଏନି । |
| ମହେଶ | : | ଲିସା ଲିସା; (ଭୋଲାକୁ) ଅଫିସରୁ ଆସି କିଛି ଖାଇ ନାହାନ୍ତି କି ଲୁଗା ବଦଳେଇ ନାହାନ୍ତି ଏତେ ସମୟ.... (ଲିସା ଆସେ) କ'ଣ ଫୋନ୍ କଲୁ ? |

ଲିସା : କେହି ଉଠଉ ନାହାନ୍ତି

ମହେଶ : ମୋବାଇଲ ?

ଲିସା : ନା ରିଂ ହଉଛି ଉଠଉ ନାହାନ୍ତି ।

ମହେଶ : ଭୋଲା ଏବେ କ'ଣ କରିବା

ଭୋଲା : ମୁଁ ସାର୍ ଟିକିଏ ଅଫିସରୁ ଆସେ ।

ମହେଶ : ଏତେ ରାତିରେ ଅଫିସରେ ଆଉ କିଏ ଥିବ ।

ଭୋଲା : ତଥାପି, ମୁଁ ଅଫିସରୁ ଆସେ

ମହେଶ : ଶୁଣ ଭୋଲା; ଅଫିସରେ ନଥିଲେ ତୁ ଟିକିଏ Collectorଙ୍କ ରେସିଡେନ୍‌ସ ଆଡ଼େ ଆଖି ପକେଇ ଆସିବୁ ।

ଭୋଲା : ଆଜ୍ଞା (ଯାଏ)

ଲିସା : ଏ ପର୍ଯ୍ୟନ୍ତ... କୁଆଡ଼େ ଆଉ ଯିବେ ।

ମହେଶ : ତୋତେ ଗଲାବେଳେ କ'ଣ କିଛି କହିନାହାନ୍ତି ?

ଲିସା : ନା, ସେ ତ ଆସିଲେ ପୁଣି ସାଂଗେ ସାଂଗେ ଫେରିଗଲେ

(ଗାଡ଼ି ଅଟକିବାର ଶବ୍ଦ)

ମହେଶ : ଗାଡ଼ିଟେ ଅଟକିଲା ନା କ'ଣ ?

ଲିସା : ହଁ (ଆଗେଇ ଆସନ୍ତି ଓମ୍‌କୁ ଧରିଧରି ଲୋକମାନ୍ ଆସେ)

ଲିସା : କ'ଣ ହୋଇଛି ? କ'ଣ ହୋଇଛି ତାଙ୍କର ?

ଲୋକମାନେ : ନାଇଁ Madam

ଓମ୍ : (ମଦ ପିଇଥାନ୍ତି) ମୁଁ ଠିକ୍ ଅଛି ଲୋକମାନ; ତମେ ଯାଅ, ମୋତେ ଛାଡ଼ ତମେ ଭାବିଛ କ'ଣ ମୁଁ drink ନେଇଛି ? No No I am ok

ମହେଶ : (ଓମ୍‌କୁ ଦେଖି ଆଶ୍ଚର୍ଯ୍ୟରେ) ଲିସା ?

ଲିସା : ଏ କ'ଣ ହେଲା dady ?

ମହେଶ୍ : ଓମ୍ drink କରେ ?

ଲିସା : ମୁଁ ତ ଏଇ ପ୍ରଥମ ଦେଖୁଛି

ମହେଶ : ଛି ଛି ଛି ? (ଲୋକମାନ ଓ ଓମ୍ ଭିତରକୁ ପଶନ୍ତି)

ଲିସା : ଚପ୍ କ'ଣ ହେଇଛି ତାଙ୍କର ? ତାଙ୍କୁ ଏମିତି ଧରିଛ କାହିଁକି ?

ଲୋକମାନ୍ : ନାଇଁ ମାଡାମ୍

ଓମ୍ : ତମ Madamକୁ କହିଦିଅ ଲୋକମାନ୍ ମୋର ହୋସ ଅଛି ହୋସ୍ (ଯାଉ ଯାଉ ପଡ଼ିଯାଆନ୍ତି ଲିସା ଯାଉଥାଏ ଧରିବାକୁ ଅଟକିଯାଏ)

ମହେଶ୍ : ଲୋକମାନ୍ ଯାଅ ତାକୁ ଭିତରକୁ ନେଇଯାଅ ।

ଲୋକମାନ୍ : ଚାଲନ୍ତୁ ସାର୍ ମୁଁ ଧରିଛି ।

ଓମ୍ : No ତମେ କାହିଁକି ମୋତେ ଧରିବ ? I am ok (ପଡ଼ିଯାଆନ୍ତି)

ଲିସା : dady ଇଏ କ'ଣ ହେଲା dady

ମହେଶ : ମୁଁ ତ ସେହିକଥା ଭାବୁଛି ଜଣେ drunkered ଠାରୁ ଭୟଙ୍କର ଆଉ କିଏ ହୋଇପାରେ, ତା' ସହିତ ତୁ କେମିତି ଚଳିବୁ ?

ଲିସା : ହେଲେ dady

ମହେଶ : ଯେ କ'ଣ ହେଲା ଲୋକମାନ୍ ତମେ ସାଂଗରେ ଥିଲ ?

ଲୋକମାନ୍ : ସାର୍ଙ୍କ mood ଆଜି ଭଲ ନଥିଲା, ସେ ମୋ ପାଖରୁ ଜବରଦସ୍ତ ଚାବି ନେଇ ଗାଡ଼ି ଚଳେଇଲେ । ମୋତେ...

ଓମ୍ : Oh shut up. I have sense. (ଉଠିବାକୁ ଚେଷ୍ଟା କରନ୍ତି)

ଲିସା : ଓମ୍ ତମେ.... ତମେ ଶେଷରେ ?

ଓମ୍ : ମଦ ପିଇଲି ? (ହସିଲେ) କ'ଣ ଭୁଲ କଲି ? No ମୁଁ କିଛି ଭୁଲ କରି ନାହିଁ । ପିଇଲି ଏଥର ପିଇବି ଆହୁରି ପିଇବି କ'ଣ ହେଲା ସେଇଠୁ ?

ଲିସା : ଓ ଧିରେ dady ଅଛନ୍ତି ପରା

ଓମ୍ : ଓ ଛାଡ଼, ମଦ ପିଇବା ଲୋକର dady ମମି କେହି ନଥା'ନ୍ତି ଆଉ ଯଦି ଥାଆନ୍ତି ତାଙ୍କୁ କହିଦିଅ ସେ ଶୋଇ ପଡ଼ନ୍ତୁ । ok ଯାଅ ।

ଲିସା : ହେଲା, ଚାଲ ରୁମ୍‌କୁ ଚାଲ ।

ଓମ୍ : (ଠେଲି ଦେଇ) ନା ଯିବିନି, ତମେ ମୋତେ ନବାକୁ କିଏ ? ଯାଅ getout ମୋ ଦେହରେ ହାତ ଦିଅନି । (ମହେଶ ରାଗି ଯାଉଥାନ୍ତି)

ଲିସା : ଓହଃ ଆସ, ବାହାରେ ଏମିତି ଚିଲେଇଲେ ଲୋକେ ଶୁଣିବେ ।

ଓମ୍ : ଶୁଣନ୍ତୁ, ଲୋକେ ଶୁଣନ୍ତୁ, ମୁଁ ମଦ ପିଇଛି ମଦ, (ଜୋର ପାଟିକଲେ)

ଲିସା : ଚୁପ୍ କର; ମଦ ପିଇବାଟା ଗୋଟେ ଗୌରବ ? ମଦ ପିଇ ଯଶ ଅର୍ଜନ କରିଛ ? ଲାଜ ନାହିଁ ତମକୁ ? ଜଣେ ଅଫିସର ହୋଇ ମଦପିଇ ରାତିଅଧରେ ଗୁରୁଜନଙ୍କ ସାମନାରେ ଚିଲଉଛ ?

ଓମ୍ : କ'ଣ ହେଲା ସେଇଠୁ ? dady ଆଗରେ ଲାଜ ଲାଗୁଛି ? ଲାଗୁ, ଚିଲେଇବି, ଆହୁରି ଚିଲେଇବି, ରାସ୍ତା ଘାଟରେ ମଦ ପିଇ ଚିତ୍କାର କରିବି, ଯାଅ କ'ଣ କରିବ ।

ଲିସା : (କାନ୍ଧକୁ ହଲେଇ ଦେଇ) ଓମ୍ ?

ଓମ୍ : Oh shut up ? (ଚାପଡ଼ାଏ ପିଟିଲେ)

ମହେଶ : (ରାଗିଯାଇ) ଓମ୍ (ଧରିନେଲେ) You drunkered, ଗୋଟେ ଚାପଡ଼ାରେ ତୋର ସବୁ ନିଶା ଉତୁରି ଯିବ ? scourdrel ମୋ ଝିଅ ଉପରକୁ ହାତ ଉଠେଇଦେଲୁ ? (ହାତଉଠାନ୍ତି)

ଲିସା : dady

ମହେଶ୍ : ଏଇଟାକୁ ମାଡ଼ ଦରକାର, ମୋ ଆଖି ଆଗରେ ସେ ତୋତେ ପିଟିବ ?

ଲିସା : ସେ ଅଧିକାର ତମେ ତାଙ୍କୁ ଦେଇ ସାରିଛ dady

ମହେଶ : ତାମାନେ (କଲର ଛାଡ଼ନ୍ତି) ତୁ କ'ଣ କହିବାକୁ ଚାହୁଁଛୁ ?

ଲିସା : ଜଣେ ଝିଅ ତା'ର ବାପକୁ ଆଉ ଅଧିକ କ'ଣ କହିପାରିବ ? ତଥାପି ମୋ ଘର କଳିରେ ଅନ୍ତତଃ (ଓମ୍ ହସିହସି ଭିତରକୁ ଯାଏ)

ମହେଶ : Ok ଲୋକମାନ୍ ଗାଡ଼ି ଅଛି ? ତମକୁ ତ ଅର୍ଡର କରିପାରିବିନି, Please ମୋତେ ଟିକିଏ ଷ୍ଟେସନ ନହେଲେ ବସ୍‌ଷ୍ଟାଣ୍ଡରେ ଛାଡ଼ି ଦେଇ ପାରିବ ? (ଭିତରକୁ ଯାଉଥାନ୍ତି)

ଲିସା : dady; ଏ କ'ଣ କରୁଛନ୍ତି ?

ମହେଶ : (କିଛି ନ ଶୁଣି ଭିତରକୁ ଯାଆନ୍ତି)

ଲିସା : ଲୋକମାନ୍ ରହ;

ଲୋକମାନେ : ମୋର କ'ଣ କରିବାର ଅଛି Madam. ମୁଁ କ'ଣ କରିବି ।

ଲିସା : dady କ'ଣ ?

ଲୋକମାନେ : ତାଙ୍କ ଜିଦ୍ ମୁଁ ଜାଣେ ସେ ଜମା ରହିବେନି (ମହେଶ ଆଟାଚି ଧରିଆସନ୍ତି)

ଲିସା : dady; ମୋର ଭୁଲ ହୋଇଛି dady (କାନ୍ଦି ପକାଏ)

ମହେଶ : ବାହା ହେଲା ଝିଅ ପର ହୋଇଥାଏ ମୁଁ ଜାଣିଥିଲି, ତଥାପି.... ନିଜରକ୍ତ ତ ସହିପାରିଲିନି ହିତାହିତ ଭୁଲିଗଲି ତୁ ଠିକ୍ ସମୟରେ ମୋତେ ମନେ ପକେଇଦେଇଛୁ ।

ଲିସା : ମୋତେ ମୋତେ କ୍ଷମା କରିଦିଅ dady

ମହେଶ : ଆରେ କିଏ କହିଲା ତୋର ଭୁଲ୍ ହୋଇଛି ବୋଲି ? ଆରେ ମୁଁ ଭୁଲ୍ କରିବାକୁ ଯାଉଥିଲି ତୁ ବରଂ ମୋତେ ବଂଚେଇ ଦେଇଛୁ । ସ୍ତ୍ରୀ ତୁ, ସ୍ୱାମୀ ପ୍ରତି ଅପମାନ ତୋ ପକ୍ଷେ ଅସହ୍ୟ ତୁ ଭାରତୀୟ ପରଂପରାର ଉଚିତ ଉଦାହରଣ ଦେଇଛୁ । ପତିକୁ ପତନରୁ ଉଦ୍ଧାର କରୁଥିବା ଯୋଗୁଁ ସ୍ତ୍ରୀକୁ ପତ୍ନୀ କହନ୍ତି । ତୋତେ ଗଲାବେଳେ ଏହି ଆଶୀର୍ବାଦ ଦେଇଯାଉଛି ତୁ ଜଣେ ଆଦର୍ଶ ପତ୍ନୀ ହୋଇ ପତିକୁ ଉଦ୍ଧାର କର ।

ଲିସା : ହେଲେ dady ରାତିଟା ପାହିଯାଉ

ମହେଶ : ନା, ମୁଁ ଓମ୍ ମୁହଁ ଦେଖିବା ତ ଦୂରର କଥା, ତା' ଆଗରେ ମୁଁ ମୋ ମୁହଁ ଦେଖାଇ ପାରିବିନି । ଯୋଉ ଦିନ ମୁଁ ଜାଣିବି ତୁ ଓମ୍‌କୁ ବଦଳେଇ ଦେଇଛୁ । ସେଦିନ ମୁଁ ନିଶ୍ଚୟ ଆସିବି । ଲୋକମାନ;

ଲୋକମାନ୍ : ହେଲେ ସାର୍ ।

ମହେଶ୍ : ଯିବ କି ନା ? ନହେଲେ ମୋତେ ରିକ୍ସା ମିଳିଯିବ ।

ଲୋକମାନେ : ନାଇଁ ସାର୍ (ଆଟାଚି ଧରନ୍ତି)

ଲିସା : (ଜୁହାର ହୁଏ ଅଂଧାର)

## ଚତୁର୍ଥ ଦୃଶ୍ୟ

(ରାତି କେବେଠୁ ପାହିଗଲାଣି । କେହି ଉଠି ନାହାନ୍ତି ଭୋଳା ବିଚରା ଏପଟ ସେପଟ ହେଉଥାଏ)

ଭୋଳା : କ'ଣ କରିବି ନଅଟା ବାଜିଲାଣି, ଘର ଭିତରେ କିଛି ସଡ଼ା ଶବ୍ଦ ନାହିଁ । ମୁଁ ବା କ'ଣ କରିବି ? କାହାକୁ କହିବି..... (ଗାଡ଼ି ଅଟକେ ଲୋକମାନ୍ ଆସେ) ଏଇ ଲୋକମାନ ଆସିଲାଣି... ଦେଖିବା....

ଲୋକମାନ୍ : କ'ଣ କି ଭୋଳା ଭାଇ ଏମିତି ଏପଟ ସେପଟ ହେଉଛୁ ?

ଭୋଳା : କ'ଣ ଆଉ କରିବି ?

ଲୋକମାନ୍ : ଅଫିସ୍ ଯିବୁନି ?

ଭୋଳା : ଘର କାମ ସରିଲେ ସିନା ଅଫିସ୍ ଯିବି ।

ଲୋକମାନ୍ : ନଅଟା ପନ୍ଦର ହେଲାଣି, ସାର୍ ବାହାରିଲେଣି

ଭୋଳା : ମୂଳରୁ କବାଟ ଫିଟିନି ।

ଲୋକମାନ୍ : କବାଟ ଫିଟିନି ? କିରେ ଆଉ କ'ଣ ହେଲାକି ?

ଭୋଳା : ମୋତେ ଭାରି ଛାନିଆ ଲାଗିଲାଣି (କବାଟ ଖୋଲେ ଲିସା)

ଲିସା : ମଉସା; କ'ଣ ହୋଇଛି ।

ଭୋଳା : ନାଇଁ ଲୋକମାନେ ଗାଡ଼ିନେଇ ଆସିଲାଣି ତ ଅଫିସ୍ ବେଳ ହୋଇଗଲାଣି ।

ଲିସା    ଅଫିସ... ? ଚଲ ସେ ତ ଉଠିନାହାନ୍ତି କ'ଣ କରିବା

ଲୋକମାନ୍ : ହଉ ଉଠନ୍ତୁ ମୁଁ ଗାଡ଼ିରେ ତେଲ ପକେଇ ଆସେ ।

ଲିସା : ନହେଲେ ବଡ଼ ବାବୁଙ୍କୁ କହିଦେବ ସେ ଆଜି ଅଫିସ ନଯାଆନ୍ତୁ ।

ଲୋକମାନ୍ : ହଉ ମୁଁ ବଡ଼ବାବୁଙ୍କୁ କହିଦେବି ନହେଲେ ବି ଦି'ଘଣ୍ଟା ପରେ ଆସିବି

ଲିସା : ହଉ ଯାଅ, (ଲୋକମାନ୍ ଯାଏ, ଲିସା ଆସେ ତଳକୁ)

ଭୋଲା : ମା ତମେ କାନ୍ଦୁଛ ?

ଲିସା : ମଉସା; ଏ କ'ଣ ହେଲା ମଉସା;

ଭୋଲା : ଭଗବାନ ଅଛନ୍ତି ସେ ସବୁଠିକ୍ କରିଦେବେ ।

ଲିସା : ସେ ତ ଏମିତି ନ ଥିଲେ

ଭୋଲା : ମୁଁ ତ ସେହିକଥା ଭାବୁଛି ଯିଏ ଖଣ୍ଡେ ପାନ ଖାଏନି ସେ କେମିତି...

ଲିସା : dady ବି କ'ଣ ଯେ ଭାବିଥିବେ ।

ଭୋଲା : ସେ ଠିକ୍ ବୁଝିଥିବେ ମା, ତମେ ତାଙ୍କ କଥା ଚିନ୍ତା କରନା ।

ଲିସା : କେଜାଣି କ'ଣ ହେବ ? ମୁଁ...

ଭୋଲା : ପାଣି ତ ଉଠା ହୋଇ ନଥିବ

ଲିସା : ନା ।

ଭୋଲା : ମୁଁ ଉଠେଇ ଦଉଛି

ଲିସା : ଯାହା କରୁଛ କର (ବସିଲେ, ଭୋଳା ଭିତରକୁ ଯାଏ) ନୀରବରେ କିଛି ସମୟ ବିତିଯାଏ, ଆସନ୍ତି ଓମ୍ ଦେଖନ୍ତି ଲିସାକୁ କ'ଣ ଭାବନ୍ତି ଅପରାଧି ଭଳି ଯାଇ ଲିସା ପାଖରେ ବସନ୍ତି)

ଓମ୍ : I am sorry ଲିସା

ଲିସା : (କେବଳ ଚାହିଁଦିଏ)

ଓମ୍ : Sorry, Excuse me.

ଲିସା : କ'ଣ ପାଇଁ ?

ଓମ୍ : ଗତକାଲିର ସେ Incident ପାଇଁ

ଲିସା : ଗତକାଲିର କଥା ତ ଗତ ହୋଇଗଲାଣି ଆସନ୍ତାକାଲିର କଥା ?

ଓମ୍ : ନାଇଁ ଜମା ନୁହେଁ ।

ଲିସା : Promise ?

ଓମ୍ : Promise

ଲିସା : ହେଲେ ତମେ....

ଓମ୍ : ଆଣସେ ପଙ୍କଜର ଫାଇଲଟା ସିଗ୍ନାଚର କରିଦିଏ । ଆରେ ସେ ଫାଇଲଟା ତ କାଲିଠୁ ଏଇଠି ପଡ଼ିଛି । ପେନ୍‌ଟା ଆଣ ।

ଲିସା : ପେନ୍ ?

ଓମ୍ : ପକେଟରେ ଥିବ

ଲିସା : ଆରେ ମୋ ପେନଟା ତ କାଲି ନେଇଥିଲ, କାହିଁ ?

ଓମ୍ : ଦେଖ, ମୋ ପକେଟରେ କି ବେଗ୍‌ରେ ଥିବ ।

ଲିସା : ପେନ୍‌ଟା ଅଛିନା ? (ଭିତରକୁ ଯାଏ)

ଓମ୍ : ସତରେ ପେନ୍‌ଟା ଅଛିନା, କୋଉଠି ପଡ଼ିଗଲା ? ଯଦି ନଥିବ ତାହେଲେ ତ ପ୍ରଳୟ ।

ଲିସା : (ଭିତରୁ) କାହିଁ, ପକେଟରେ ନାହିଁ କି ବେଗ୍‌ରେ ନାହିଁ

ଓମ୍ : (ନିଜ ପକେଟ ଦେଖି) ଚାଲିଲ ଦେଖି (ଦୁହେଁ ଭିତରକୁ ଯାଆନ୍ତି)

ଲିସା : କାହିଁ ? ଏଠି ତ ନାହିଁ ।

ଓମ୍ : ସେ ବେଗ୍‌ରେ ଦେଖ

ଲିସା : ନା ସେଥିରେ ବି ନାହିଁ

(ଲିସା ଆସେ ରାଗରେ)

ଲିସ : କାହିଁ ? କୁଆଡ଼େ ଗଲା ମୋ ପେନ୍ ?

ଓମ୍ : ତାହେଲେ କ'ଣ ପେନ୍‌ଟା କୋଉଠି ପଡ଼ିଗଲା ?

ଲିସା : ମୁଁ କେମିତି ଜାଣିବି ?

ଓମ୍ : ମୁଁ ଲକ୍ଷ୍ୟ କରିନି କୋଉଠି ହୁଏତ...

ଲିସା : ତାମାନେ.... ମୋର ସେ କଲମ... ନାହିଁ ?

ଓମ୍ : ମୋ କଥା ଟିକିଏ ଶୁଣ ।

ଲିସା : ମୁଁ ପଚାରୁଛି ମୋ କଲମ କାହିଁ ?

ଓମ୍ : Please ଲିସା ମୁଁ ଦେଖୁଛି ।

ଲିସା : ତମେ... ତମେ ଶେଷରେ ମୋ କଲମଟାକୁ ହଜେଇ ଦେଲ

ଓମ୍ : ଓହ... ମୋ କଥା ଟିକିଏ ଶୁଣ

ଲିସା : ନାନାନା ମୁଁ କିଛି ଶୁଣିବିନି ମୋତେ କଲମ ଦିଅ... (ଭିତରକୁ ପଶିଯାଏ)

ଓମ୍ : ଆରେ ଶୁଣ ଶୁଣ (ପଛେ ପଛେ ଯାଆନ୍ତି କିଛି ସମୟ ପରେ ଭୋଲା ଭିତରୁ ଆସେ)

ଭୋଲା : ହେ ପ୍ରଭୋ ଜଗନ୍ନାଥ ରକ୍ଷାକର ପ୍ରଭୋ । ଇଏ କ'ଣରେ ବାପା ! ମୁଁ ଭାବେ ଆମ ଗରିବ ଗୁରୁବା ଘରେ ଏମିତି କଳିହୁଏ ଝଗଡ଼ା, ରାଗ ରୋଷ ହୁଏ ଏମାନଙ୍କ ଘରେ ବି ସେଇଆ, କି ଝଗଡ଼ା ? ପୁଣି ଗୋଟେ ଛାର କଲମ ପାଇଁ (ଆସନ୍ତି ବଡ଼ବାବୁ)

ଭୋଲା : ବଡ଼ବାବୁ ଜୁହାର

ଜଗତ୍ : କିରେ ଭୋଲାନାଥ, ସାଇବ ଉଠିଲେଣି

ଭୋଲା : (ଚୁପ୍ ରହିବାକୁ ଇସାରା ଦିଅନ୍ତି)

ଜଗତ : କିରେ ଭୋଲା; ଘର ଚିରେ କ'ଣ ମହାଭାରତ

ଭୋଲା : ହଁ ଏକବାରେ ଲଙ୍କାକାଣ୍ଡ

ଜଗତ୍ : କିରେ କ'ଣ ପାଇଁ ?

ଭୋଲା : ଗୋଟେ କଲମ ପାଇଁ ନା କ'ଣ ?

ଜଗତ୍ : କଲମ ? ରାମ ରାମ

ଭୋଲା : ହଁ ସାଆବ ମାଆଙ୍କ କଲମଟା କୋଉଠି ହଜେଇ ଦେଇଛନ୍ତି ।

ଜଗତ : ହଃ ଗୋଟେ ହଜିଗଲେ ଦଶଟା ଆଣିଦେବେ ଏଥିରେ କଳି କରିବାର କଅଣ ଅଛି

ଭୋଲା : ସେଇ ତ କଥା, ସାଇବ କହିଲେଣି କଲମତ ଦେବେ, ହାର କରିଦେବେ ବଳା କରିଦେବେ, ଶାଢ଼ୀ କିଣିଦେବେ, ମାଆ

ଆମର କୋଉଥିରେ ରାଜି ନୁହନ୍ତି କଲମ ନେବେ ପୁଣି ସେହି କଲମ

ଜଗତ : ଏଟା କି କଥା, ସେ କଲମତ ହଜିଗଲାଣି, ସିଏ କ'ଣ ଆଉ ମିଳିବ ?

ଭୋଳା : ହଁ ବଡ଼ଘର ବଡ଼ କଥା

ଜଗତ୍ : ହଁ ଛାଡ଼, ଆରେ ଭୋଳା; ଆଉ କେତେ ରହିଲା ?

ଭୋଳା : ଦି'ମାସ ନା କେତେ

ଜଗତ : ସାଏଁ କିନା ଚାଲିଯିବ, ତା'ପରେ ଦରମା ତ ମିଳିବନି ଏ ଘର ବି ଛାଡ଼ିବୁ ନୂଆ Watchman ଯିଏ ଆସିବ ସିଏ ରହିବ । କ'ଣ କେମିତି କରିବୁ ।

ଭୋଳା : ପେନ୍‌ସନ୍ ଯାହା ମିଳିବ ସେଥିରେ ଚଳିବି

ଜଗତ : ପେନ୍‌ସନ୍ ? କ'ଣ ଗଛରେ ଫଳିଛି ଦୌଡ଼ିଯିବୁ ତୋଳି ଆଣିବୁ ?

ଭୋଳା : ଆପଣ ଅଛନ୍ତି ଯାହା କରିବେ

ଜଗତ : ମୁଁ କିଏ କ'ଣ କରିପାରେ, ଯାହା କରିବ ରୁପିୟା

ଭୋଳା : ଯାହା ଲାଗିବ ଦେଖିବା

ଜଗତ : ଅଫିସରୁ ଫାଇଲ ଯିବ ଟ୍ରେଜେରୀ ସେଠୁ ଏ.ଜି. ସେଠୁ ଫାଇନାନ୍‌ସ୍ ସେଠୁ ଅଡିଟ ସେଠୁ ସେକ୍ରେଟାରୀଏଟ୍ ଏମିତି ସାତ ଅଫିସ ବାର ବିଲଡିଂ ତିରିଶ ଟେବୁଲ ଘୁରିଲେ ପେନ୍‌ସନ୍ ମିଳେ । ଏତେ ଘୁରି ହେବ । ତା ଲାଗି ଟଙ୍କା ଦରକାର ଟଙ୍କା ।

ଭୋଳା : ହଉ ଦେଖିବା ଯାହା ଲାଗିବ ଦବା ।

ଜଗତ : ସେହି କଥା କହ, ନହେଲେ ଏମିତି ସାତମାସ କ'ଣ ସାତ ବରଷ ଘୂରିଲେ ତୁ ମୁଁ ତ ପାରିବିନି - ବିନା ଭୋଗରେ ଫାଇଲ ଉଠିବ ତ ନାହିଁ ଚାଲିବ କ'ଣ ? (ଆସନ୍ତି ଓମ୍)

ଓମ୍ : କ'ଣ ହେଲା ବଡ଼ବାବୁ କୁଆଡ଼େ ଆସିଛନ୍ତି ?

ଜଗତ୍ : ସାର୍ ନମସ୍କାର - ସାର୍ ଟିକିଏ ବେଙ୍କ ଯିବାକୁ ପଡ଼ିବ, ଆଜି ବାର୍ଦ୍ଧକ୍ୟ ଭତ୍ତା ବାଣ୍ଟିବା date ତ ।

ଓମ୍ : ମୁଁ ଯାଇ ପାରିବିନି, ଆପଣ ମେନେଜ କରନ୍ତୁ ।

ଜଗତ୍ : ସାର୍ ଟଙ୍କା ନ ଦେଲେ ପଞ୍ଚାୟତରେ ହଲ୍ଲା ହୋଇଯିବ ।

ଓମ୍ : ମୋ ଘରେ ଏଣେ ହଲ୍ଲା ହୋଇଗଲାଣି, ମୁଁ ଗତକାଲି ଗୋଟେ ପେନ୍ ଧରିଥିଲି କୋଉଠି ହଜେଇ ଦେଇଛି, ଦେଖିଛନ୍ତି କି ?

ଜଗତ୍ : ସାର୍ ସେହି ପେନ୍‌ଟାକି ? ସେହି ଯୋଉ Madamଙ୍କ ପ୍ରିୟ କଲମ । ଅର୍ଡ଼ିନାରୀ କଲମଟା

ଓମ୍ : ସେଗୁଡ଼ା ସ୍ତ୍ରୀଲୋକମାନେ ବୁଝନ୍ତିନି, ସେ ପେନ୍‌ଟା କୁଆଡ଼େ ଗଲା ଆଗ ଖୋଜନ୍ତୁ

ଜଗତ୍ : କୋଉଠି ପଡ଼ି ଯାଇଥିବ

ଓମ୍ : କୋଉଠି ପଡ଼ି ଯାଇଥିବ ନୁହେଁ କେମିତି ମିଳିବ ବ୍ୟବସ୍ଥା କରନ୍ତୁ -

ଜଗତ : କେମିତି ମିଳିବ ?

ଓମ୍ : ପୁରସ୍କାର declare କରନ୍ତୁ, ଥାନାରେ FIR ଦିଅନ୍ତୁ, ଯେମିତି ହେଲେ କଲମ ଆଣନ୍ତୁ ନହେଲେ ମୋର ଅଫିସ ଘର, ସଂସାର ସବୁ ଗଲା ।

ଜଗତ୍ : ଭଲାକଥା ହେଲା ଗୋଟିଏ ସାଧାରଣ କଲମ ପାଇଁ ଏତେ କଥା; ଇଏ ଆଉ କି କଲମକି ସାର; କିଏ କ'ଣ ଉପହାର ଦେଇଥିଲାକି ? ଅତୀତ ସ୍ମୃତି କିଛି ଅଛି ନିଶ୍ଚୟ

ଓମ୍ : ଓହ ମୁଁ ଯାହା କହିଲି ସେଇଆ କର

ଜଗତ : ଯାଉଛି ସାର୍ ।

ଓମ୍ : ଭୋଳା; ଆରେ 'ହାଁ' ଟା କରି ରହିଁଛୁ କ'ଣ ? ଯା' ଦେଖ କୁଆଡ଼େ ଗଲା କଲମଟା

ଭୋଳା : ଆଜ୍ଞା - (ଯାଏ)

ଓମ୍ : (ଏପଟ ସେପଟ ହେଲେ, ଭାବିଲେ)

କୁଆଡ଼େ ଗଲା ଆଉ କଲମଟା; ଗଲାତ ଗଲା ସେଥିପାଇଁ ଏତେଚିଡ୍ କାହିଁକି ?.... କାରଣ କ'ଣ ହୋଇପାରେ ? କିଏ ଉପହାର ଦେଇଥିଲା ? ଆରେ ଆରେ ସେଦିନ ଲେଖିଲାବେଳେ ପଙ୍କଜ ତ remark କରୁଥିଲା Yes ତାମାନେ ପଙ୍କଜ କ'ଣ....

(ଅନ୍ୟ Zoneରେ ପଙ୍କଜ ଆସେ ଲିସାକୁ ଗୋଟିଏ ଖୋଳ ଭିତରେ କଲମଟେ Present କରେ - ଲିସା କଲମ ନେଇ ଖୁସି ହୁଏ - ଲିସା ହାତରେ ପଙ୍କଜ ସେହି କଲମରେ ତା' ନାମ ଲେଖିଦିଏ) ।

ଓମ୍ : ନା !

- ଅଂଧାର -

## ପଞ୍ଚମ ଦୃଶ୍ୟ

(ଲିସା ବସିଥାଏ garden zoneରେ, କ'ଣ ସବୁ ଭାବି ଯାଉଥାଏ ଭୋଳା ଆସେ)

ଭୋଳା : ମାଆ; କେତେଦିନ ଏମିତି ଅଖିଆ ଅପିଆ ବସି ସେ କଲମଟାକୁ ଭାବୁଥିବ ।

ଲିସା : ତମେ ହୁଏତ ବୁଝି ପାରିବନି ମଉସା, ସେ କଲମଟା ମୋର କେତେ ପ୍ରିୟ, ତା' ପାଇଁ: ମୁଁ କେତେ କଷ୍ଟ ନପାଇଛି, କୋଡ଼ିଏ ବର୍ଷ ଧରି କଲମଟିକୁ ମୋ ଜୀବନ ଭଳି ସାଇତି ରଖିଛି, ତାକୁ ଛାଡ଼ି ମୁଁ ବଂଚି ପାରିବିନି ମଉସା ।

ଭୋଳଳା : ମାଆ, ହଜିଗଲା ଚିଜ କ'ଣ ଫେରିଆସିବ ? ତମେ ପରା ମୋତେ ଦିନେ ବୁଝେଇଥିଲ, ଯିଏ ଥରେ ଯାଏ ସିଏ ଆଉ ଫେରେନା, ତମରି କଥାର ବଳରେ ମୁଁ ଏ ପର୍ଯ୍ୟନ୍ତ ବଂଚିଛି, ତମପାଇଁ ମୁଁ ତ ଫେର୍ କାହ୍ନୁକୁ ବି ଭୁଲି ପାରିଲି ।

ଲିସା : ହେଲେ ମଉସା ଜାଣୁ ଜାଣୁ ଇଚ୍ଛାକରି ହଜେଇ ଦେଲେ ମୁଁ ସହିପାରିବି

ଭୋଳା : ଏମିତି ମାନକରି ବସିଲେ କାହାର କ'ଣ ହୋଇଯିବ, ମାଆ, ଯାହା ହବ ତମର, ତମ ସଂସାରର କାହିଁକି ଜାଣୁ ଜାଣୁ ଭବିଷ୍ୟତଟାକୁ ନଷ୍ଟ କରିଦେବ ?(ଗେଟ୍ zoneରେ ସତ୍ୟାନନ୍ଦ ଦେଖାଦିଅନ୍ତି)

ଭୋଳା : (ସତ୍ୟାନନ୍ଦକୁ) ହଁ ହଁ ଯାଉଛି (ଲିସାକୁ) ମାଆ, ମୁଁ ଯୋଉ ନାହାକ କଥା କହୁ ନଥିଲି, ସେ ଏଇବାଟେ ଯାଉଛନ୍ତି ଡାକିବି ?

ଲିସା : ସେ ମୋ କଲମ ଖୋଜିଦେବେ ?

ଭୋଳା : କହୁଛନ୍ତି ତ କେତେ ଲୋକଙ୍କ ହଜିଲା ଦରବ ଖୋଜି ଦେଇଛନ୍ତି ବୋଲି ଦେଖିବା ସେ ଆସନ୍ତୁ, କ'ଣ କହୁଛନ୍ତି କୁହନ୍ତୁ ।

ଲିସା : ତାଙ୍କୁ କୁହ ମଉସା, ସେ ଯାହା ନେବେ ମୁଁ ଦେବି ମୋ କଲମଟା ଖୋଜି ଦିଅନ୍ତୁ ।

ଭୋଳା : ହଁ ହଁ ଆସ ଆସହେ ନାହାକେ

ସତ୍ୟାନନ୍ଦ : ଆରେ ୱାଚମେନ ସାଇବ, କ'ଣ ହେଲା, ମୁଁ ସେଦିନ କହୁଥିଲି ତମ ଘରର ଦକ୍ଷିଣ ଦିଗରେ କାଉମାନେ ଶନିଙ୍କ ବାହନ ବସିଲାଣି, ଦଶା ପଡ଼ିବ, ପଡ଼ିଲା ।

ଭୋଳା : ହଉ ଗୋସେଇଁ ଟିକିଏ ଖଡ଼ି ପକାଅ କୁହ କ'ଣ ହଜିଛି କେମିତି ହଜିଛି କେମିତି ମିଳିବ ? ଯଦି ମିଳିବ କେବେ ମିଳିବ ?

ସତ୍ୟାନନ୍ଦ : ଆ ହା ହା ଏଟା ବାପା B.P.L.କାର୍ଡ଼ ନୁହେଁରେ ଦେଖେଇ ଦେଲେ ଚାଉଳ ଚିନି ଗହମ କିରୋସିନୀ ସବୁ ସାଏଁସାଏଁ ମିଳିଯିବ । ଇଏ ଜ୍ୟୋତିଷ ପାଠ ପୁଣି ବୃହସ୍ପତି ସାଧନା, ଶନି ଉପାସନା ବୁଦ୍ଧି ବନ୍ଦନାର କଥା, ଏମିତି ବାତୁଳ ହେଲେ ହେବନା ?

ଭୋଳା : ଆଉ

ସତ୍ୟାନନ୍ଦ : ଭୋଜ୍ୟ ଲାଗିବ, ସିଦା ପଡ଼ିବ, ତା'ପରେ ଖଡ଼ିପୂଜା ହେବ ତା'ପରେ ଯାଇ ପ୍ରଶ୍ନ

ଲିସା : ଜ୍ୟୋତିଷ ମହାଶୟ ଆପଣ ଯାହା ଚାହିଁବେ ଆମେ ଦବୁ ।

ସତ୍ୟାନନ୍ଦ : ସେହି କଥାଟା ଆଦ୍ୟରୁ କହି ଦଉନାହାନ୍ତି ମୁଁ ଯଥା ସମ୍ଭବ ସଂକ୍ଷେପରେ କାର୍ଯ୍ୟ ସମାପନ କରିଦେବି ।

ଲିସା : କରନ୍ତୁ ।

ସତ୍ୟାନନ୍ଦ : ଆଚ୍ଛା Madam ଗୋଟିଏ ଫୁଲର ନାମ କହିଲେ ?

ଲିସା : ଫୁଲ ? (ଏଣେ ତେଣେ ଚାହିଁ) କୃଷ୍ଣଚୂଡ଼ା

ସତ୍ୟାନନ୍ଦ : କୃଷ୍ଣଚୂଡ଼ାମାନେ ବସନ୍ତ ଋତୁରେ ଫୁଟେ, ବସନ୍ତର ବଂଧୁମାନେ କୋଇଲି କୋଇଲିର ରଂଗକଳା, ହଁ Madam ଆପଣଙ୍କର ଯାହା ହଜିଛି ତା'ର ରଂଗ କଳା ।

ଲିସା : ହଁ ଆଜ୍ଞା ତା'ର ରଂଗ କଳା

ସତ୍ୟାନନ୍ଦ : ବାସ୍, ତାହେଲେ ହୋଇଗଲା,

ଭୋଲା : ଦେଖ ଦେଖ ନାହାକେ ଯଦି ମିଳିଯିବନା

ସତ୍ୟାନନ୍ଦ : ଓହ, ଧୈର୍ଯ୍ୟଧର ବାଳକ ଧୈର୍ଯ୍ୟଧର, ହଁ କଳାରଂଗ, କଳାରଂଗମାନେ ଆପଣଙ୍କର ବନ୍ଧୁ ପ୍ରିୟ କୁକୁରଟା ହଜିଛି ।

ଭୋଲା : ଏ ନା, କୁକୁର ତ ମୂଳରୁ ନାହିଁ ଆଉ ହଜିବ କେମିତି ?

ସତ୍ୟାନନ୍ଦ : କ'ଣ ହେଲା, କୁକୁର ନାହିଁ ? ତାହେଲେ ବିରାଡ଼ି ବିରାଡ଼ି ହଜିଛି ।

ଭୋଲା : ନା, ବିରାଡ଼ି କୋଉଠୁ ଆସିବ ।

ସତ୍ୟାନନ୍ଦ : ତାହେଲେ.... ତାହେଲେ ପାଠ ତ କହୁଛି କଳାରଂଗର ଚିଜ ମାନେ ମାନେ....ଓ ହଁ ହଁ ଆପରଙ୍କର ବହୁମୂଲ୍ୟ ଛେଳିଟେ ହଜିଛି ସେ ଆଉ ମିଳିବନି ଆଜିକାଲି ଏଇ ଯୋଉ ଟୋକା ସେମାନେ କ'ଣ ତାକୁ ଜୀବନରେ ରଖିଥିବେ ?

ଭୋଲା : ନା ଛେଳି କୁକୁର ବିରାଡ଼ି ଏସବୁ କିଛି ହଜିନି

ସତ୍ୟାନନ୍ଦ : ତାହେଲେ ହଜିଛି କ'ଣ ? (ଆସନ୍ତି ଓମ୍)

ଓମ୍ : କଲମ

ସତ୍ୟାନନ୍ଦ : କଲମ ହଜିଛି ? ସେହି କଥାଟା ସେତେବେଳୁ କହୁ ନାହାନ୍ତି

ଓମ : ଆମେ ଯଦି କହିଦେବୁ, ଆପଣଙ୍କ ପାଠ ?

ସତ୍ୟାନନ୍ଦ : ମୋ ପାଠ ତ ପ୍ରଥମେ କଲମ କହିଥିଲା, ମୋତେ ବିଶ୍ୱାସ ହେଲାନି, କଲମ ଗୋଟେ ଚିଜ ସିଏ ପୁଣି ହଜେ ଆଉ ତାକୁ ପୁଣି ଖୋଜନ୍ତି ।

ଓମ୍ : ହେଲା, ଆମର କଲମଟେ ହଜିଯାଇଛି ଆପଣ ଖୋଜି ଦେଇପାରିବେ କି ?

ସତ୍ୟାନନ୍ଦ : ମନ ଲଗାଇ ଚେଷ୍ଟା କଲେ -

କିବା ଅସାଧ ମହୀ ତଳେ ଚେଷ୍ଟା କଲେ ସବୁ ସମ୍ଭବ ।

ଓମ୍ : ତା' ହେଲେ ଚେଷ୍ଟା କରନ୍ତୁ ।

ସତ୍ୟାନନ୍ଦ : ସେଗୁଡ଼ା ଆମ କାମ ନୁହେଁ, ଆମ କାମ ହେଲା ଗଣନା କରିବା ।

ଓମ୍ : ଗଣନା ତ ଯାହା କଲେ ଏବେ ଯାଆନ୍ତୁ ।

ସତ୍ୟାନନ୍ଦ : ହେଲା, ଆପଣ କହିଲେ ଆମେ ଯାଉଛୁ ।

ଓମ୍ : ନା, ଯାଆନ୍ତୁ ।

ସତ୍ୟାନନ୍ଦ : ଏମିତି ବାରମ୍ବାର ଯାଆନ୍ତୁ ଯାଆନ୍ତୁ କାହିଁକି କହୁଛନ୍ତି, ଆମେ କ'ଣ ମୋଫତରେ ନିଜେ ନିଜେ ପଶି ଆସିଛୁ ? ଆମକୁ ଡାକିବାରୁ ଆମେ ଆସିଛୁ, କିଓ ୱାଚମେନ୍ ସାହାବ ତମର ମାନସମ୍ମାନ ନାହିଁ ବୋଲି ଆମର କ'ଣ ନାହିଁ ?

ଲିସା : (ବିରକ୍ତିରେ ଓମ୍‌କୁ ଚାହେଁ) (ସତ୍ୟାନନ୍ଦ ଯାଆନ୍ତି)

ଓମ୍ : ଭୋଳା ! ଏସବୁ ତୋରି କାମ ? ତୋତେ କିଏ କହିଲା ଏମିତି ଭଣ୍ଡମାନଙ୍କୁ ଡାକିବାକୁ ? ମୋତେ ପଚାରି ଥିଲୁ ?

ଭୋଳା : ନାଇଁ ସାର୍ ଗୋଟେ କଲମ ପାଇଁ ଏତେ କାଣ୍ଡ ଘଟୁଛି, ମାଆ ଅଖିଆ ଅପିଆ ପଡ଼ିଛନ୍ତି, ଆପଣ ଅଫିସ୍ ଯାଉ ନାହାନ୍ତି ।

ଓମ୍ : ତୋର କ'ଣ ଗଲା ?

ଭୋଳା : ମୁଁ ଭାବିଲି ଜ୍ୟୋତିଷମାନେ ତ ସତ କହନ୍ତି, ଭଏ କାଳେ କହିବେ ସେଇପାଇଁ ଡାକି ଆସିଥିଲି ।

ଓମ୍ : କ'ଣ ତୋ ଖୁସିରେ ? ତୋତେ କିଏ କହିଲା ଆମ ଘର କଥାରେ ମୁଣ୍ଡ ପୂରେଇବାକୁ ?

ଭୋଳା : ମୋର ଭୁଲ୍ ହୋଇଛି ସାର୍ ।

ଲିସା : ମୁଁ ତ କହିଥିଲି ଡାକି ଦେବାକୁ, କ'ଣ ହେଲା ସେଇଠୁ ?

ଓମ୍ : କଲମ ମିଳିଗଲା ? ମୁଁ ଏସବୁ ଭଲପାଏନା, ଭୋଳା ତୋତେ ପୁଣିଥରେ କହିଦଉଛି ତୁ ଆମ ଘର ବ୍ୟାପାରରେ ମୁଣ୍ଡ ପୂରେଇ ଏତେ ମୁରବିପଣିଆ ଦେଖାନା ।

ଭୋଳା : ନାଇଁ ସାର୍ ।

ଓମ୍ : ଯା' ତୋ କାମରେ ଯା' । (ଭୋଳା ଯାଏ, ଲିସା ବି ଭିତରକୁ ଯାଉଥାଏ ।)

ଓମ୍ : କ'ଣ, ଏମିତି ଆଉ କେତେଦିନ ଚାଲିବ ?

ଲିସା : କଲମ ମିଳିବା ପର୍ଯ୍ୟନ୍ତ ।

ଓମ୍ : କଲମ ଯଦି ନ ମିଳେ ?

ଲିସା : ନା !

ଓମ୍ : କଲମ ନ ମିଳିଲେ ପରିଣତି କ'ଣ ହେବ ?

ଲିସା : କେବଳ ଚାହିଁ ଦିଏ ଏକ ଭିନ୍ନ ଦୃଷ୍ଟିରେ ।

ଓମ୍ : ମୁଁ ପଚାରୁଛି ପରା ।

ଲିସା : କହି ପାରିବିନି ।

ଓମ୍ : କହିପାରିବ ନାହିଁ ନା କହିବ ନାହିଁ ?

(ଲିସା କେବଳ ଚାହିଁଦେଇ ଚାଲିଯାଏ, ଓମ୍ ଚାହିଁ ଥାନ୍ତି ଆସନ୍ତି ବ୍ରହ୍ମପୁତ୍ର ମିଶ୍ର ।)

ଓମ୍ : ଆରେ ମିଶ୍ର ବାବୁ ଯେ !

ବ୍ରହ୍ମପୁତ୍ର : From ତୋ ଟିଭି. ।

ଓମ୍ : ଆସନ୍ତୁ ଆଉ ଏଠି କେମିତି ?

ବ୍ରହ୍ମପୁତ୍ର : ଅଫିସ୍‌ରେ ତ ଆପଣ ମିଳୁ ନାହାନ୍ତି ।

ଓମ୍ : ନାଇଁ ମୁଁ ଟିକଏ otherwise busy ରହୁଛି ତ ।

ବ୍ରହ୍ମପୁତ୍ର : କଥା କ'ଣ କି ଆଜ୍ଞା ମୁଁ ଶୁଣିଲି ଆପଣଙ୍କର ଗୋଟେ ବହୁମୂଲ୍ୟ କଲମ ହଜିଛି ।

ଓମ୍ : କୁହନ୍ତୁନି ଆଜ୍ଞା ସେ କଲମ ମୋର ବଂଚିବା ମରିବା ସମାନ କରିଦେଲାଣି ।

ବ୍ରହ୍ମ : କ'ଣ ହେଲା, ଗୋଟେ କଲମ ଆପଣଙ୍କର ଜୀବନ ମୃତ୍ୟୁକୁ ଏକାକାର କରି ଦଉଛି ? ତା'ହେଲେ ତ ଏଟା Important କଲମ, ତା'ର ମିଳିବାର ବନ୍ଦୋବସ୍ତ କରୁ ନାହାନ୍ତି ।

ଓମ୍ : ମୁଁ କ'ଣ ବ୍ୟବସ୍ଥା କରୁନି ? ହେଲେ

ବ୍ରହ୍ମ : ମିଳୁ ନାହିଁ ? ମିଳିବ ବି ନାହିଁ, କାରଣ ଆପଣ ସାମ୍ବାଦିକମାନଙ୍କ ସାହାଯ୍ୟ ଲୋଡ଼ି ନାହାନ୍ତି ।

ଓମ୍ : ଅବଶ୍ୟ...

ବ୍ରହ୍ମ : ଶୁଣନ୍ତୁ ଆପଣ ଗୋଟେ ସାମ୍ବାଦିକ ସମ୍ମିଳନୀ ଡାକନ୍ତୁ । ସେମାନେ ନିଜନିଜ ପେପରରେ କଲମଟାକୁ ନେଇ ବିଭିନ୍ନ ପ୍ରକାର ଗଳ୍ପ, ଫିଚରମାନ କରି ଛାପନ୍ତୁ, ବିଜ୍ଞାପନ ମାଧ୍ୟମରେ ମଧ୍ୟ କଲମ ହଜିଛି headline କରି ଛାପନ୍ତୁ । ତା'ଛଡ଼ା ଟି.ଭି.ରେ, କଲମର any photograph ? ହଉ ନଥାଉ କହିଲେ Computerରେ ହୋଇଯିବ ଟି.ଭି.ରେ ମଧ୍ୟ ଗୋଟେ advertisement କରିଦିଅନ୍ତୁ । ହଁ କିଛି ପୁରସ୍କାର ଘୋଷଣା କରିଥିବେ । ଗୋଟେ Week କ'ଣ, ଗୋଟିଏ ଦିନରେ କଲମ ମିଳିବ ।

ଓମ୍ : ଏମିତି କଲେ ମିଳିଯିବ ?

ବ୍ରହ୍ମ : ମିଳିଯବ ମାନେ, ଷଣ୍ଢ କଖାରୁ କୁକୁଡ଼ା ମିଳି ଯାଉଛି ଇଏତ କଲମ ମିଳିବଇ ମିଳିବ ! ଏଇ ଗତ ସପ୍ତାହରେ ଆମ ହଟଦମନ ବାବୁଙ୍କ ଷଣ୍ଢଟା କୁଆଡ଼େ ଗ୍ଭଲିଗଲା ତାଙ୍କ ସ୍ତ୍ରୀ ଖିଆପିଆ ଛାଡ଼ିଦେଲେ । କ'ଣ କରିବେ ହଟଦମନ ବାବୁଙ୍କୁ ମୁଣ୍ଡରେ ଚଡ଼କ ପଡ଼ିଗଲା । ମୋ ପାଖରେ ପହଞ୍ଚିଲେ, ବାସ୍ ଗୋଟେ advertisement ବାଜିଗଲା ଷଣ୍ଢ ତ ଆସି ହମ୍ବାରଡ଼ି ଦେଇ ଘରେ ପଶିଗଲା ।

ଓମ୍ : Please ବ୍ରହ୍ମ ବାବୁ, ମୋ ପାଇଁ ଟିକିଏ କଷ୍ଟ କରନ୍ତୁ ।

ବ୍ରହ୍ମ : କଷ୍ଟ କ'ଣ ଏଗୁଡ଼ା ଆମ କର୍ତ୍ତବ୍ୟ ଆପଣ ଗୋଟେ Press meet ଆଗ କରିଦିଅନ୍ତୁ, ଛାଡ଼ନ୍ତୁ ପ୍ରେସ୍ ମିଟ୍ ଦରକାର ନାହିଁ ଆପଣ ଆଉ

କାହାକୁ କିଛି କହିବେନି । ମୁଁ କରିଦଉଛି ।

ଓମ୍ : ଆପଣ କରନ୍ତୁ ଯାହା ଖର୍ଚ୍ଚ ପଡ଼ିବ ମୁଁ ତ ଦେବି ତା' ଛଡ଼ା ।

ବ୍ରହ୍ମ : ମୁଁ ବୁଝିଛି ଆଜ୍ଞା, ଆପଣଙ୍କ ପାଖରେ ଏଗୁଡ଼ା ଆଉ କହିବାକୁ ଅଛି ।

ଓମ୍ : ହଉ । (କିଛି ଟଙ୍କା ଦେଇ) ଏବେ ଏତିକି ରଖନ୍ତୁ ।

ବ୍ରହ୍ମ : ହେଲା । (ପୁଲିସ୍ ପହଞ୍ଚେ)

ପୁଲିସ୍ : B.D.O. ସାର୍ ଅଛନ୍ତି ।

ବ୍ରହ୍ମ : ଅଛନ୍ତି ମାନେ ସାମ୍ନାରେ ଛିଡ଼ା ହୋଇଛନ୍ତି ।

ପୁଲିସ୍ : ଆପଣଙ୍କର ଗୋଟିଏ ବହୁମୂଲ୍ୟ କଲମ ହଜିଛି ବୋଲି ଆପଣ ଥାନାରେ F.I.R. ଦେଇଥିଲେ ।

ଓମ୍ : ହଁ ।

ପୁଲିସ୍ : ମୁଁ inquiry ପାଇଁ ଆସିଛି ।

ଓମ୍ : ହଁ

ପୁଲିସ୍ : ହେଲା ସାର୍ ମୁଁ ଆପଣଙ୍କୁ ଯାହା ପଚାରୁଛି ଆପଣ କିନ୍ତୁ ସଂକ୍ଷେପରେ ଉତ୍ତର ଦେବେ ।

ଓମ୍ : ମୋତେ ପଚାରିବେ ।

ପୁଲିସ୍ : କଲମଟା କାହାର ?

ଓମ୍ : ମୋ ମିସେସ୍‌ଙ୍କର ।

ପୁଲିସ୍ : ଏଇ ତ ଆପଣ ଜଣେ ଦାୟିତ୍ୱବାନ ଅଫିସର୍ ହୋଇ ମଧ୍ୟ ମିସେସ୍‌ଙ୍କୁ ଅର୍ଥାତ୍ ନାରୀ ଜାତିକୁ neglect କରୁଛନ୍ତି ।

ଓମ୍ : ମୁଁ ଅଫିସ୍ ଯାଉଛି ମିସେସ୍‌ଙ୍କୁ କହିପାରନ୍ତି ଆପଣ inquiry କରନ୍ତୁ ।

ବ୍ରହ୍ମ : ସାର୍ F.I.R. ଯଦି ଦେଇଛନ୍ତି ତା'ର କପି ଖଣ୍ଡେ ଦରକାର ।

ପୁଲିସ୍ : ଏ ବାବୁ ?

ବ୍ରହ୍ମ : ମୋତେ ଚିହ୍ନିନ ? କେତେ ବର୍ଷ ହେଲା ଏଠି ରହିଲଣି ?

ପୁଲିସ୍ : ବର୍ଷ କାହିଁକି ? ମାସେ ତ ହେଇନି ।

ବ୍ରହ୍ମ : ହଉ ମାସ ପୂରୁ, ବର୍ଷ ହଉ ମୋତେ ଥରେ ଜାଣିଗଲେ ଆଉ ଜୀବନସାରା ଭୁଲି ତ ପାରିବନି ।

ପୁଲିସ୍ : ଆପଣ ଆଉ କିଏ କି ?

ଓମ୍ : ଇଏ ଆମ ଡୋ ଟି.ଭି. ପ୍ରତିନିଧି ବ୍ରହ୍ମପୁତ୍ର ମିଶ୍ର ।

ପୁଲିସ୍ : ଏଁ ! ଡୋ ଟି.ଭି. ? ମାନେ ଆପଣ ଡୋ ଟି.ଭି.ର ଏଜେଣ୍ଟ ? ଆପଣଙ୍କୁ ଶହେ ନାଇଁ ହଜାରେ ସଲାମ ।

ବ୍ରହ୍ମ : କାହିଁକି ? କାହିଁକି ଆପଣଙ୍କର ଏତେ ଟି.ଭି. ଭକ୍ତି କାହିଁକି ?

ପୁଲିସ୍ : ଆଜ୍ଞା ଖରାପ ଭାବିବେନି ଆପଣମାନେ ହେଲେ ବିଷ୍ଣୁଙ୍କର ସିଧା ନୃସିଂହ ଅବତାର ଯୋଉଠି ଖୋଜିଲେ ସେଇଠି ଥିବେ, ଆପଣଙ୍କର ନଖ, ଦାନ୍ତ ଆଉ ସେ ବିକଟାଳ ଚେହେରା... ସିଧା ବିଦାରଣ, ସାର୍ ଆଉଥରେ ଜୁହାର ।(ଲିସା ଆସେ)

ଓମ୍ : ଲିସା ଥାନାରୁ ଆସିଛନ୍ତି କଲମ ବିଷୟରେ inquiry କରିବେ, ମୋର ଅଫିସ୍‌ଟାଇମ୍ ହେଲାଣି, ଆସନ୍ତୁ ମିଶ୍ରବାବୁ । (ଯାଆନ୍ତି)

ଲିସା : ନମସ୍କାର

ପୁଲିସ୍ : ଆଚ୍ଛା ଆପଣଙ୍କର ଗୋଟେ ବହୁ ମୂଲ୍ୟ କଲମ ହଜିଛି ?

ଲିସା : ହଁ

ପୁଲିସ୍ : ସେ କଲମଟିକୁ Madam either କିଣିବେ or କାହାଠୁ ଉପହାର ପାଇଥିବେ, କିଣିଥିବେ ତ କିଣିଥିବେ, ଯଦି ଉପହାର ପାଇଥିବେ ।

ଲିସା : ନା ମୁଁ କିଣି ନାହିଁ କି ଉପହାର ପାଇ ନାହିଁ ।

ପୁଲିସ୍ : କ'ଣ ହେଲା କିଣି ନାହାନ୍ତି କି ଉପହାର ପାଇ ନାହାନ୍ତି ତା' ହେଲେ ଆପଣ କଲମଟିକୁ either ପାଇଥିବେ or ଚୋରି କରିଥିବେ ।

ଲିସା : ନା ପାଇ ତ ଥିଲି ହଁ ଚୋରୀ କରିଥିଲି ।

ପୁଲିସ୍ : ଚୋରୀ କରିଥିଲେ either ଧରା ପଡ଼ିଥିବେ or ଖସି ଯାଇଥିବେ ।

ଲିସା : ନା, ଧରାପଡ଼ି ନଥିଲି କି ଖସି ଯାଇ ନଥିଲି, ନିଜେ ନିଜେ ଦୋଷ ସ୍ୱୀକାର କରି ଧରା ଦେଇଥିଲି ।

ପୁଲିସ୍ : ଧରା ଦେଇଥିଲେ ? ଆପଣ either ପୁଲିସ୍‌କୁ ଧରା ଦେଇଥିବେ or କଲମର ମାଲିକକୁ ଧରା ଦେଇଥିବେ । ଯଦି ପୁଲିସ୍‌କୁ ଧରା ଦେଇଥିବେ ।

ଲିସା : ନା, ମୁଁ ପୁଲିସ୍‌କୁ ଧରା ଦେଇ ନଥିଲି ।

ପୁଲିସ୍ : କ'ଣ ହେଲା, ଆପଣ ପୁଲିସ୍‌କୁ ଧରା ଦେଇ ନଥିଲେ, ଏଇଠି ତ ଆପଣ ଭୁଲ୍ କଲେ, ପୁଲିସ୍‌କୁ ଧରା ଦେଇଥିଲେ ଆଜି ଆପଣଙ୍କୁ ଏ ଦୁର୍ଦ୍ଦଶା ଭୋଗିବାକୁ ପଡ଼ି ନଥାଆନ୍ତା ।

ଲିସା : କେମିତି ?

ପୁଲିସ୍ : ଆପଣ ପୁଲିସ୍‌କୁ ଧରା ଦେଇଥିଲେ ପୁଲିସ୍ ପ୍ରଥମେ ଚୋରିମାଲ୍ ଅର୍ଥାତ୍ କଲମଟାକୁ ସିଜ୍ କରିଥାଆନ୍ତା, ତା' ପରେ ତାହା ମାଲଖାନାରେ depisit ରହିଥାଆନ୍ତା, ଧୀରେଧୀରେ ମାଲଖାନାରୁ ତାହା ନିଖୋଜ ହୋଇଥାଆନ୍ତା, ଆପଣଙ୍କ ହାତକୁ ଆସି ନଥାନ୍ତା, ଆଉ ଆପଣଙ୍କ ହାତକୁ ଆସି ନ ଥିଲେ ଆଉ ହଜିବାର ନ ଥାନ୍ତା । ଆଉ କଲମଟା ହଜି ନ ଥିଲେ ଆପଣଙ୍କୁ ଏମିତି ଦୁର୍ଦ୍ଦଶା ଭୋଗିବାକୁ ପଡ଼ି ନ ଥାନ୍ତା ।

ଲିସା : ଆଉ ଆପଣଙ୍କୁ ବି ଏଠାକୁ ଆସିବାକୁ ପଡ଼ି ନଥାନ୍ତା । ହଉ ଧନ୍ୟବାଦ ।

ପୁଲିସ୍ : ନା ନା ରୁହନ୍ତୁ, ଏବେଠୁ ଯଦି ଧନ୍ୟବାଦଟା ଦେଇ ଦେବେ ମୁଁ କଲମଟା ଖୋଜି ଆଣିଲା ପରେ ଆଉ ଦେବେ କ'ଣ ?

ଲିସା : ମୁଁ ଜାଣେ ଆପଣ କଲମଟା ଖୋଜିଆଣି ପାରିବେନି ତେଣୁ ଏବେଠୁ ଧନ୍ୟବାଦ ଦେଇ ଦଉଛି ।

ପୁଲିସ୍ : ହଉ ଆପଣ ଆମ department ଉପରେ ଭରସା ରଖନ୍ତୁ । ଆମେ କଲମ ପାଉଛୁ କି ନା ଦେଖନ୍ତୁ ।

ଲିସା : ହଉ ଆଜ୍ଞା ନମସ୍କାର (ପୁଲିସ୍ ଯାଏ) ହୁଁ ଯୋଉ departmentରେ ଏହିଭଳି ଦକ୍ଷ କର୍ମଚାରୀ ଅଛନ୍ତି, ସେ department ଉପରେ କେମିତି ବା ଭରସା କରିବା ।

(ଭୋଳା ଅଫିସ୍ ବାହାରେ)

ଲିସା : ମଉସା ! ତମେ କୁଆଡ଼େ ବାହାରିଲଣି ?

ଭୋଳା : ଅଫିସ୍ ବେଳ ହେଇଗଲାଣି ପରା ।

ଲିସା : ମୋର ତ ମନେନାହିଁ ଆସ ଆସ ଖାଇବାକୁ ଦେଉଛି ।

ଭୋଳା : ନାଇଁ ମା', ମୋତେ ଆଜି କାହିଁକି ଭୋକ ହେଉନି ।

ଲିସା : ତମେ ତାଙ୍କ କଥା ଧରିଲ କି ମଉସା ?

ଭୋଳା : ନା ମାଆ, ସିଏ ତ ଆମ ଅଫିସର୍ ଆମକୁ ଶାସନ କରିବା ତାଗିଦ୍ କରିବା ତାଙ୍କ କାମ, ତାଙ୍କ କଥାକୁ ଧରିବି କାହିଁକି ?

ଲିସା : ନା ମଉସା ତମେ ମୋତେ ଲୁଚଉଛ, କ'ଣ କରିବି କୁହ ସେ ଟିକିଏ ବିରକ୍ତ ହୋଇଛନ୍ତି ତ ।

ଭୋଳା : ହେଲା ମାଆ ତମେ ଡାକିଦେଇ ମୁଁ ବୁଝିଗଲି, ନିଜେ ଉପାସ୍ ରହି ମୋ ପେଟକଥା ମନେରଖିଛ ଏତିକି ମୋପାଇଁ ଢେର । ଏତିକିରେ ମୋ ପେଟ ପୂରି ଗଲାଣି ମା' । ମୁଁ ଆସେ ଭୋକ ହେଲେ ଖାଇବିନି ଯିବି କୁଆଡ଼େ ? ହେଲେ ମା' ମୋ ପେଟକଥା ତ ଏତେ ବୁଝୁଛ, ନିଜକଥା ଟିକେ ବୁଝ । ଦେଖ ତମେ ନ ଖାଇଲେ ମୁଁ ବି ଖାଇବିନି, ଯାହା ହବାର ତ ହୋଇଗଲାଣି, ଯିଏ ହଜିବାର ତ ହଜିଗଲାଣି ଭାବିଲେ କ'ଣ ମିଳିଯିବ ନା ଉପାସରେ ରହିଲେ କ'ଣ ଫେରିଆସିବ ?

ଲିସା : ହଉ ହେଲା, ତମେ ଆସ ମୁଁ ରନ୍ଧାରନ୍ଧି କରି ରଖିଥିବି ସାଙ୍ଗ ହୋଇ ଖାଇବା ।

ଭୋଳା : ମୋ ମାଆଟା ପରା ।

ଲିସା : ହଉ ଆସ(ଭୋଳାଯାଏ, ତା'ର ଯିବା ବାଟକୁ ଲିସା ଚାହିଁ ରହେ) ଆହାହା ବିଚରା ନିଜର କେହି ହେଲେ ନାହିଁ ତଥାପି କେତେ ମାୟା (ଭିତରକୁ ଯାଏ, କିଛିସମୟ ପରେ ପଙ୍କଜ ଆସେ, ଚାହେଁ ଧୀରେଧୀରେ ଗେଟ୍ ଖୋଲେ, ଭିତରକୁ ପଶେ, କ'ଣ ଭାବେ, callingbell ମାରେ, ଲିସା ଆସେ) ?

ଲିସା : କିଏ ? ପଙ୍କଜ ?

ପଙ୍କଜ : ହଁ

ଲିସା : କୁଆଡ଼େ ? କ'ଣ ଦରକାର ? ସେ ବିଲ୍‌ରେ ସିଗନେଚର ହୋଇନାହିଁ କି ହେବନାହିଁ, ଅଫିସ୍‌କୁ ଫେରି ଯାଇଛି, ଅଫିସ୍‌ରୁ ନେଇଯିବୁ ।

ପଙ୍କଜ : ମୁଁ ଜାଣେ ।

ଲିସା : ତ ଫେର କି କାମରେ କାହିଁକି ଆସିଛୁ ?

ପଙ୍କଜ : ତୋ ପେନ୍‌ଟା ସତରେ ହଜି ଯାଇଛି ?

ଲିସା : ସେଥିରେ ତୋର କ'ଣ ଗଲା ?

ପଙ୍କଜ : ନାଇଁ ସେ କଲମଟାକୁ ତୁ ତୋ ଜୀବନଠୁ ଅଧିକ ଭଲପାଉ ।

ଲିସା : ଏବେବି ପାଏ ।

ପଙ୍କଜ : ସେଇଟା ହଜିଗଲା ତ ତୁ ଖୁବ୍ କଷ୍ଟ ପାଉଥିବୁ ।

ଲିସା : ସମବେଦନା ପାଇଁ ଧନ୍ୟବାଦ ।

ପଙ୍କଜ : ନା, ପ୍ରକୃତରେ ମୁଁ ତୋତେ ଧନ୍ୟବାଦ ଦେବାକୁ ତୋ ନିକଟରେ କୃତଜ୍ଞତା ଜଣାଇବାକୁ ଆସିଛି ।

ଲିସା : କାହିଁକି ?

ପଙ୍କଜ : ଏ ବ୍ଲକ୍‌ରେ, ଖାଲି ବ୍ଲକ୍‌ରେ କାହିଁକି ଦରକାର ପଡ଼ିଲେ ଏ ଜିଲ୍ଲାରେ ମୋ ସାମ୍ନାରେ ମୁଣ୍ଡ ଉଠେଇ କଥା କହିବାକୁ କେହି ସାହସ ବି କରନ୍ତିନି । ମୋ ଜୀବନରେ ଏମିତି କେତେ ଅଫିସର୍ ନେତା ଗୁଣ୍ଡା ବଦମାସ୍ ମାଫିଆମାନଙ୍କୁ ଭେଟିଛି ସମସ୍ତଙ୍କ ମୁଣ୍ଡ ମୋ ଆଗରେ ଝୁଙ୍କି ପଡ଼ିଛି । କିନ୍ତୁ ତୁ ମୋ ଜୀବନରେ ଗୋଟେ ବ୍ୟତିକ୍ରମ ହୋଇ ଛିଡ଼ା ହୋଇଗଲୁ । ଗୋଟେ ଚାପଡ଼ାରେ ମୋର ଚିନ୍ତା ଚେତନାର ଦାଦାଗିରିକୁ ଭାଙ୍ଗିରୁଜି ଚୁରମାର କରିଦେଲୁ । ପଙ୍କଜ ପରିଡ଼ା ଭଳି ଗୋଟେ ଦୁର୍ଦ୍ଦାନ୍ତ ମଣିଷକୁ ଚୁପ୍ କରିଦେଲୁ । ଏ ସାହସ ତୁ ପାଇଲୁ କୋଉଠୁ ? ମୋତେ ଚାପଡ଼ା ମାରିବାର ସାହସ ତୁ କଲୁ କେମିତି ?

ଲିସା : ନାଇଁ ପଙ୍କଜ ! ମୁଁ କିଛି ଭାବିନି କି ଚିନ୍ତା କରିନି ମୋ ହାତ କେମିତି ହଠାତ୍ ଉଠିଗଲା ।

ପଙ୍କଜ : ପିଲାବେଳେ ମୋ ମାଆ ଯଦି ମୋତେ ଏମିତି ଚାପୁଡ଼ାଏ ମାରିଥାନ୍ତା ତା' ହେଲେ ମୁଁ ଏମିତି ଜୀବନସାରା ନଷ୍ଟଚରିତ୍ରର ବୋଝ ବୋହି ଚାଲୁ ଥାନ୍ତି । ଯାହାହଉ ବିଳମ୍ବରେ ହେଲେ ମଧ୍ୟ ତୁ ମୋ ମା' ନହଅ ଭଉଣୀ ଭାବରେ ମୋର ବଡ଼ଭଉଣୀ ହୋଇ ମୋତେ ଚାପଡ଼ା ମାରି ଚେତେଇ ଦେଇଛୁ ପଙ୍କଜ ! ତୁ ଯାହା କରୁଛୁ ଭୁଲ୍ ।

ଲିସା : ନାଇଁ ପଙ୍କଜ ମୁଁ ମୋ ଆଗରେ ଜଣେ ଛାତ୍ର ଦ୍ୱାରା ସାରଙ୍କୁ ଦୁର୍ବ୍ୟବହାର ସହି ପାରିଲିନି । ଭୁଲ୍ ଠିକ୍ ବିଶେଷକରି ପରିଣତି ବିଷୟରେ ଚିନ୍ତା ନ କରି ହାତ ଉଠେଇ ଦେଲି, ସେଥିପାଇଁ ମୁଁ ଏ ପର୍ଯ୍ୟନ୍ତ ଅନୁତପ୍ତ ।

ପଙ୍କଜ : ଆଉ ମୁଁ ନିର୍ବାକ ହୋଇ ସେ ଚାପଡ଼ାକୁ ସହିଗଲି, ସେହି ଗୋଟିଏ ଚାପଡ଼ା ମୋର ସମସ୍ତ ଦମ୍ଭ ଅହଂକାର ଆଉ ଅଭିମାନକୁ ସର୍ବସ୍ୱାନ୍ତ କରିଦେଲା । ମୁଁ ସେହି ଦିନ ଠାରୁ ମୁହଁ ଲୁଚେଇ ବୁଲୁଛି । କ୍ୱାହାକୁ ମୁହଁ ଦେଖେଇବାର ସାହସ କରିପାରିନି ଆଜି ତୋ ପାଖକୁ ଆସିଛି ଗୋଟିଏ ଅନୁରୋଧ ନେଇ ।

ଲିସା : କ'ଣ ?

ପଙ୍କଜ : ମୋତେ ଟିକିଏ ସାହାଯ୍ୟ କରିବୁ ।

ଲିସା : ଆରେ ତୁ ପରା ମୋତେ ବଡ଼ଭଉଣୀର ଆସନରେ ବସେଇ ସାରିଲୁଣି । ତୋର କ'ଣ ମୋ ଉପରେ ଅଧିକାର ନାହିଁ ? କ'ଣ ସାହାଯ୍ୟ କରିବି କହ ? ତୋ ବିଲ୍ ?

ପଙ୍କଜ : ନା, ମୁଁ ସାର୍‌ଙ୍କୁ କ୍ଷମା ମାଗିବାକୁ ଚାହେଁ ।

ଲିସା : ବାସ୍, ଏ ତ ଅତି ଭଲକଥା । ତୋର କ୍ଷମା ମାଗିବା ଉଚିତ ।

ପଙ୍କଜ : ହେଲେ... ମୋର କ'ଣ ମୁହଁ ଅଛି ସାର୍‌ଙ୍କ ଆଗରେ ଛିଡ଼ା ହେବାକୁ ।

ଲିସା : ଆରେ ବିଦ୍ୟାଧର ସାର୍ ସେମିତି ନୁହନ୍ତି, ତୁ ଗଲାମାତ୍ରେ ସେ ତୋତେ କୋଳେଇ ନେବେ ।

ପଙ୍କଜ : ମୁଁ ମାନୁଛି... ହେଲେ... ତୁ ଟିକିଏ ମୋ ସାଙ୍ଗରେ ଯାଆନ୍ତୁନି ।

ଲିସା : ମୁଁ ?

ପଙ୍କଜ : ହଁ, ଏଇ ମୋ ଗାଡ଼ି ଅଛି, ସାଙ୍ଗେ ସାଙ୍ଗେ ଯିବା, ସାର୍‌ଙ୍କ ସହିତ କଥା ହୋଇ ପୁଣି ତୋତେ ଛାଡ଼ି ଦେଇ ଯିବି ।

ପଙ୍କଜ : ମୁଁ ଅବଶ୍ୟ ତୋତେ ବାଧ କରିବିନି ।

ଲିସା : ନାଇଁ ଯେ...

ପଙ୍କଜ : ପଟ୍ଟନାୟକ ବାବୁ ।

ଲିସା : ନା ନା ସେ ଅବଶ୍ୟ ନାହାନ୍ତି ଅଫିସ୍ ଗଲେଣି, ମୋର ବି ସେ ପୁରୁଣା ସ୍କୁଲ୍ ଦେଖିବାର ଇଚ୍ଛା ହେଉଛି ।

ପଙ୍କଜ : ଆସୁନୁ just ଯିବା ଆଉ ଆସିବା ।

ଲିସା : ଠିକ୍‌ଅଛି, ଚାଲ (ଦୁହେଁ ଯାଆନ୍ତି କିଛିସମୟ ମଂଚ ଶୂନ୍ୟ ରହିବା ପରେ ଲୋକମାନ୍ ଆସେ)

ଲୋକମାନ: ମା ! Madam ! (ଏଣେତେଣେ ଖୋଜେ) କୁଆଡ଼େ ଗଲେ, ଘରେ ତ କେହି ନାହାନ୍ତି ତାଲା ପଡ଼ିଛି । କେଡ଼େ ଖୁସିରେ ଆସିଥିଲି ଖୁସିର ଖବରଟା ଦେଇଥାନ୍ତି ହେଲେ (ଆସନ୍ତି ଓମ୍ ଖୁବ୍ ଖୁସିରେ)

ଓମ୍ : ଗୁଡ୍, ଗୁଡ୍ ଲୋକମାନେ; ମୁଁ ଯାହା ଶୁଣିଲି ସତ ? ତମେ କଲମଟା ପାଇଛ ?

ଲୋକମାନ୍: ହଁ ସାର୍, ଗାଡ଼ିଟା ସର୍ଭିସିଂ କରୁଥିଲି ତ, ସିଟ୍ ତଳେ କଲମଟା ପାଇଲି ।

ଓମ୍ : କେମିତି ଗଳି ପଡ଼ିଛି ।

ଲୋକମାନେ : ଦେଖନ୍ତୁନା ଏଇଟା (କଲମଟେ ଦିଏ)

ଓମ୍ : ଆରେ ହଁ ଏଇଟା ସେହି କଲମ । ଯାହାପାଇଁ ମୋ ଜୀବନ ଏକଦମ୍ ଏପଟସେପଟ ହୋଇଗଲାଣି । ଯାହଉ ତମେ ବହୁତ ବଡ଼ କାମଟେ କରିଦେଇଛ ଲୋକମାନ ତମ ଋଣ ମୁଁ ଏ ଜନ୍ମରେ ଶୁଝି ପାରିବିନି । ମୁଁ ତମକୁ କ'ଣ ଦେବି କ'ଣ ଦେଇ ତମକୁ ପୁରସ୍କୃତ କରିବି ।

ଲୋକମାନ: ନାଇଁ ସାର୍ ମୁଁ ବା କ'ଣଟା କରି ପକେଇଛି, ଗାଡ଼ିରେ ଥିଲା ପାଇଲି ଆଣିଦେଲି ।

ଓମ୍ : ଏଇଟା ତମ ପାଇଁ ସାଧାରଣ ହୋଇପାରେ ହେଲେ ମୋ ପାଇଁ ଯେ କେତେବଡ଼ ତମେ ବୁଝି ପାରିବ ନାହିଁ । ଏଇ କଲମଟାକୁ ଫେରାଇ ଦେଇ ମୁଁ ମୋ ସ୍ତ୍ରୀକୁ କେତେ ଯେ ଖୁସି କରିପାରିବି ତାହା ତମେ... ହଁ ଠିକ୍ଅଛି ଏଇ ନିଅ । ମୋର ଅନୁରୋଧ ଏଇ ଟଙ୍କାରେ ତମେ ତମ ସ୍ତ୍ରୀଙ୍କ ପାଇଁ ଖଣ୍ଡେ ଭଲ ଶାଢ଼ୀ କିଣି ଦେବ ।

ଲୋକମାନ: ନାଇଁ ସାର୍ କ'ଣ ହେବ ।

ଓମ୍ : ମୁଁ କହିଲି ନିଅ ଧର, ମୋ ଖୁସି ତମେ ଫେରାଇ ଦେଇଛ ତମେ ଖୁସି ହୁଅ ନିଅ ଧର ଧର କହିଲି ।

ଲୋକମାନ: (ନେଇ) ହେଲେ ସାର୍ ମାଡ଼ାମ୍ କାହାନ୍ତି ?

ଓମ୍ : ମାନେ ?

ଲୋକମାନ: ଘରେ ତ କେହି ନାହାନ୍ତି ।

ଓମ୍ : କେହି ନାହାନ୍ତି (ଯାଆନ୍ତି) ଲିସା : ଲିସା (ଏଣେତେଣେ ଖୋଜନ୍ତି) କୁଆଡ଼େ ଆଉ ଗଲେ ।

ଲୋକମାନ: ମୁଁ ବି ସେହି କଥା ଭାବୁଛି ।

ଓମ୍ : ତା' ମାନେ... କୋଉ ସାଙ୍ଗ...(ଫୋନ୍ କରନ୍ତି) Hallow... ଲିସା ଯାଇଛି କି ? ଯାଇନି ? (ଆଉ ଏକ ଜାଗାକୁ dial କରନ୍ତି) Hallow.... କ'ଣ କହିଲେ ଲିସା ଯାଇନି ? କୁଆଡ଼େ ଆଉ ଗଲା ? (ପୁଣି ଫୋନ୍)....

ଲୋକମାନ: କିଏ ! (ପଙ୍କଜ ଓ ଲିସା ହସିହସି ଆସନ୍ତି, ଓମ୍ ଦେଖି ଢଳିଯାଉ ଥାଆନ୍ତି) ସବୁ ଖୁସି ଯେମିତି ବାଲିବନ୍ଧ ପରି ଭୁଷୁଡ଼ି ପଡୁଥାଏ)

ଲିସା : ତମେ !

ଓମ୍ : (ଯାଉ ଯାଉ) କ'ଣ ଆଶା କରି ନଥିଲ ?

ଲିସା : ନାଇଁ ହଠାତ୍ ? ଅଫିସ୍ ସମୟରେ ତ...

ଓମ୍ : ଭୁଲ୍ କଲିକି ?

ଲିସା : ନାଇଁ ମୁଁ ଟିକିଏ ସ୍କୁଲ୍ ଚାଲିଗଲି ।

ଓମ୍ : ଆରେ ପଙ୍କଜ ବାବୁ ଯେ - ଆସନ୍ତୁ ବାହାରେ ଛିଡ଼ା ହେଲେ ଯେ ।

ପଙ୍କଜ : ସାର୍ ନମସ୍କାର ।

ଓମ୍ : ଲୋକମାନ ଆସ । (ଲୋକମାନ ଓମ୍‌କୁ ନେଇ ଯାଆନ୍ତି ଏମାନେ ରହିଁ ଥା'ନ୍ତି ।

- ଅନ୍ଧାର -

## ଷଷ୍ଠଦୃଶ୍ୟ

(Garden Zoenରେ ଓମ୍ ବସି ଥାଆନ୍ତି କ'ଣ ଭାବୁଥାନ୍ତି ଭାବୁଭାବୁ କାଗଜଟେ ଧରି କ'ଣ ଲେଖନ୍ତି ଏହି ସମୟରେ ଭୋଳା ଅଫିସ୍ ବାହାରେ)

ଓମ୍ : ଭୋଳା ! କୁଆଡ଼େ ଯାଉଛୁ ?

ଭୋଳା : ଅଫିସ୍ ଆଡ଼େ ଯାଉଥିଲି ସାର୍ ।

ଓମ୍ : ଶୁଣ୍, ନେଇଯା ଏ applicationଟା ବଡ଼ବାବୁଙ୍କୁ ଦେଇଦବୁ ।

ଭୋଳା : ଆଜ୍ଞା(ଯାଉ ଯାଉ ଅଟକି ଯାଏ)

ଓମ୍ : ଆଉ କ'ଣ ?

ଭୋଳା : ସାର୍ ।

ଓମ୍ : କ'ଣ ହେଲା, ଉକିରି ତ ସରିଗଲା ଆଉ କ'ଣ ?

ଭୋଳା : ଘରଟା କଥା କହୁଥିଲି ।

ଓମ୍ : ଘର ? ଘର କ'ଣ ହେବ ?

ଭୋଳା : ମୋ ଘରକାମ ସରିଗଲାଣି ଖାଲି କବାଟ ଝରକା ଲାଗିବ, ସେତିକି ଦିନ ଏ ଘରେ ।

ଓମ୍ : ନା, ଉକିରି ସରିଲା ଘର ଛାଡ଼ିଦବୁ କାଲି ସକାଳେ ଘର ଖାଲି ହବ। କାହା ଘରେ କୋଉ ବଂଧୁବାଂଧବ ଘରେ ରହିଯିବୁ ।

ଭୋଳା : କିଏ ଆଉ ଅଛି କାହା ଘରେ ରହିବି ।

ଓମ୍ : ସେ କଥା ତୁ ବୁଝିବୁ, ମୁଁ କିଛି କରିପାରିବିନି ।

ଭୋଳା : (ଦୀର୍ଘଶ୍ୱାସ ପକେଇ) ହଉ ଯାହା ଭାଗ୍ୟରେ ଥିବ(ମହେଶ ଆସନ୍ତି)

ମହେଶ : ଆରେ ଭୋଳା କ'ଣ ହେଇଛି ଏଠି ? ଏତେ ବ୍ୟସ୍ତ ହୋଇ ଓମ୍ ଫୋନ୍ କଲେ ।

ଭୋଳା : କାହିଁ, ନା' ତ, ସବୁତ ଠିକ୍‌ଅଛି ।

ମହେଶ : ମଲା ରଖେଇ ବସେଇ ଦେଲେନି ଫୋନ୍ ଉପରେ ଫୋନ୍ କ'ଣ ହୋଇଛି ।

ଭୋଳା : ମୁଁ ତ ଜାଣେନି, ହେଲା ଆସିଛନ୍ତି ବୁଝିଯିବେ କିନ୍ତୁ ସାର୍ ଆଜି ମୋର ଶେଷଦିନ । ଯା'ହଉ ଦେଖା ହୋଇଗଲା, ମୁଁ ଆସୁଛି ସାର୍ ଜୁହାର(ଯାଏ)

ମହେଶ : ଆଚ୍ଛା ଆଜି ତୁ Retired କରିବୁ, ହେଲେ କ'ଣ ହେଲା, ଏଠି ତ କେହି ନାହାନ୍ତି (ଲିସା ଆସେ)

ଲିସା : Dady...ଆପଣ ? ଏମିତି ହଠାତ୍ ?

ମହେଶ : ଆରେ ତମର କ'ଣ ଏମିତି ହୋଇଛି ? ଓମ୍ ରଖେଇ ଥୋଇ ଦଉ ନାହାନ୍ତି । ଖାଲି ଫୋନ୍ ଉପରେ ଫୋନ୍ । Dady kindly ଟିକିଏ ଆସନ୍ତୁ ।

ଲିସା : ସିଏ ଡାକିଛନ୍ତି କାହିଁ ମୁଁ ତ କିଛି ଜାଣେନି ।

ମହେଶ : ତୁ ଜାଣିନୁ... ଅଥଚ ଓମ୍... ତମ ଦି'ଜଣଙ୍କର ସବୁ ଭଲ ତ ?

ଲିସା : ଆସନ୍ତୁ ଭିତରକୁ ଆସନ୍ତୁ ।

ମହେଶ : ନାଇଁ ମୋତେ କେମିତି ଗୋଟେ ଝଡ଼ର ସୂଚନା ମିଳୁଛି ।

ଲିସା : ନା ନା ସେମିତି କିଛି ନାହିଁ ତ ?

ମହେଶ : ମୋତେ କାହିଁକି ଡକେଇଲେ ? ସେ କାହାନ୍ତି ?

ଲିସା : ଭିତରେ ଅଛନ୍ତି ।

ମହେଶ : ଚାଲିଲୁ, ଚାଲିଲୁ ଦେଖିବା (ଉଭୟେ ଭିତରକୁ ଯାଆନ୍ତି, କିଛି ସମୟ ପରେ ଆସନ୍ତି ଜଗତ ବାବୁ)

ଜଗତ : (ଦରଖାସ୍ତଟା ଆଉଥରେ ପଢ଼) ଏଁ ଏଡ଼େକଥା, ଆଜିକାଲି ଯୋଉ ଯୁଗ, ଏଥିରେ ଚାକିରି ଖଣ୍ଡେ ପାଇବା ପାଇଁ କିଏ କେତେ କ'ଣ କରୁଛି, ଆଉ କ'ଣ ନା ସାର୍ ଆମର... ପାଗଳା ହୋଇଗଲେ କି ? ଏମିତି କରିବାର କାରଣ କ'ଣ.. ? ପଚାରିବା... କ'ଣ ହେଲା ସେଇଠୁ ? (Calling bell ମାରନ୍ତି, ଲିସା ଆସେ ।) ମାଡ଼ାମ୍ ନମସ୍କାର ।

ଲିସା : ଆରେ ବଡ଼ବାବୁ ! କଥା କ'ଣ ? ସାର୍‌ଙ୍କୁ ଡାକି ଦେଉଛି ।

ଜଗତ : ନା ନା ମାଡ଼ାମ୍ ଗୋଟେ କଥା ବୁଝିବାର ଥିଲା ।

ଲିସା : କହନ୍ତୁ ।

ଜଗତ : ଆମ ସାର୍‌ଙ୍କର କ'ଣ ମୁଣ୍ଡ ଖରାପ ହୋଇଗଲାଣି ?

ଲିସା : କାହିଁକି ?

ଜଗତ : ଦେଖୁ ନାହାନ୍ତି(କାଗଜଟା ଦିଅନ୍ତି)

ଲିସା : (ପଢ଼ି ସାରି) ଇଏ କ'ଣ ବଡ଼ବାବୁ

ଜଗତ : ସେଇ ତ କଥା, ଭୋଳା ନେଇ କି ଦେଲା, ମୁଁ ଭାବିଲି ଛୁଟି ଦରଖାସ୍ତ, ପଢ଼ିଲା ବେଳକୁ ତ ମୋ ମୁଣ୍ଡରୁ ଗମ୍‌ଗମ୍ କିନା ଝାଳ ବୋହିଗଲା । କ'ଣ ନା ରେଜିଗ୍‌ନେସନ୍ ମୋ ମୁଣ୍ଡ କିଛି କାମ କରିଲାନି, ସିଧା ଦୌଡ଼ିଛି ।

ଲିସା : ମୁଁ ତ ଏ ବିଷୟରେ ବିନ୍ଦୁବିସର୍ଗ ବି ଜାଣେନି, ତଥାପି ଆପଣ ଯାଆନ୍ତୁ ଏଇଟା ମୋ ପାଖରେ ଥାଉ ।

ଜଗତ : ସେଇ କଥା ପରା, ଆପଣ ରଖନ୍ତୁ ବୁଝି ବିଚାରି ଯାହା କରିବେ ।

ଲିସା : ହଁ ଆପଣ ଆସନ୍ତୁ ।

ଜଗତ : ଆଚ୍ଛା । (ଯାଆନ୍ତି, ଲିସା ଭାବନ୍ତି)

ଲିସା : ଅଫିସ୍‌କୁ ରେଜିଗ୍ନେସନ୍ ପଠେଇଛନ୍ତି ଏଣେ ଗାଆଁରୁ dadyଙ୍କ ଡକାଇ ଆଣିଛନ୍ତି... କଅଣ ହେଲା ? ମୁଁ ତ କିଛି ବୁଝିପାରୁନି ।

(ଏହି ସମୟରେ ହଠାତ୍ ଭିତରୁ ବିସ୍ଫୋରିତ ହୋଇ ବାହାରି ଆସନ୍ତି ମହେଶ)

ମହେଶ : କ'ଣ ଭାବିଛ କି ତମେ ? ମୋତେ ଘରୁ ଡକେଇ ଆଣି ମୋ ଆଗରେ ମୋ ଝିଅକୁ କହିବ ଚରିତ୍ରହୀନା ?

ଲିସା : କ'ଣ ହେଲା dady ?

ମହେଶ : ଆରେ ଦେଖ୍ ଦେଖ୍ ଏ ଓମ୍‌କୁ, କ'ଣ କହୁଛି ସେ ଶୁଣ ।

ଲିସା : କ'ଣ ? (ଓମ୍ ବାହାରି ଆସେ)

ଓମ୍ : ଆପଣ ହଠାତ୍ ଏମିତି ରାଗି ଯାଉଛନ୍ତି କାହିଁକି ?

ମହେଶ : ରାଗିବିନି ? ଉତ୍ତେଜିତ ହେବିନି ? ମୋ ଝିଅର ଚରିତ୍ରକୁ ନେଇ ତମେ ପ୍ରଶ୍ନ କରିବ ମୁଁ ଚୁପ୍ ହୋଇ ଶୁଣିଯିବି ?

ଓମ୍ : ମୁଁ ଯାହା କହିଛି ସତ କହିଛି ସଂପୂର୍ଣ୍ଣ ସତ କହିଛି, ପଚାରନ୍ତୁ ଆପଣଙ୍କ ଝିଅକୁ ।

ଲିସା : କ'ଣ କହିଛ ମୁଁ ଚରିତ୍ରହୀନା ? କୁଳଟା ? ଓମ୍ ତମେ... ତମେ ମୋତେ ସଂଦେହ କଲ ? ମୋତେ ଚରିତ୍ରହୀନା କହିଲ ? ଧିକ୍ ଧିକ୍ ମୋର ଏ ଜୀବନକୁ ମୁଁ ମୁଁ ଶେଷରେ... (ଭିତରକୁ ପଳାଏ)

ଓମ୍ : ପ୍ରମାଣ ନବ ପ୍ରମାଣ ?

ମହେଶ : କ'ଣ ଆଉ ଅଧିକ ପ୍ରମାଣ ତମେ ଦେଖେଇବ ? ମୁଁ ମୋ ନିଜ ଆଖିରେ ଦେଖିଛି ତମେ ଯୋଉଦିନ ମଦ ପିଇ ଚିତ୍କାର କଲ ଲିସାକୁ ଧକ୍କା ମାରିଲ ମୁଁ ସହି ପାରିଲିନି ତମ ଉପରକୁ ମୋ ହାତ ଉଠି ଯାଇଥିଲା ସେତେବେଳେ ଲିସା କ'ଣ କଲା ଜାଣ ମୋ ହାତକୁ ଧରିନେଇ ମୋତେ ଯୋଉ ଶିକ୍ଷା ଦେଲା ମୋର ବାପପଣ ତା'ର ପତ୍ନୀତ୍ୱ ଆଗରେ ଚୁର୍‌ମାର୍ ହୋଇଗଲା । ତମେ ତାକୁ ସନ୍ଦେହ କରୁଛ ?

ଓମ୍ : ମୁଁ ସେଦିନ କାହିଁକି ମଦ ପିଇଥିଲି, ଜାଣନ୍ତି

ମହେଶ : ଆରେ କାପୁରୁଷ ମଦ ପିଏ, ପାଗଳ ମଦ ପିଏ, ମଦ ପିଇ ସମସ୍ୟାର ସମାଧାନ କରାଯାଏନି ବରଂ ନୂଆ ନୂଆ ସମସ୍ୟା ସୃଷ୍ଟି କରାଯାଏ । ମୋର ଅନୁରୋଧ ଓମ୍ Please ତମେ ଲିସାକୁ ସବୁ କୁହ ଚରିତ୍ରହୀନା କୁହନା । ମୁଁ ତମ ହାତ ଧରୁଛି ।

ଓମ୍ : ଆପଣ ତ ଆସିଛନ୍ତି ଲିସାକୁ ପଚାରନ୍ତୁ ପଙ୍କଜ ସହିତ ତା'ର ସଂପର୍କ କ'ଣ ?

ମହେଶ : ପଙ୍କଜ ? (ବିଦ୍ୟାଧର ସାର୍ ଆସନ୍ତି)

ବିଦ୍ୟାଧର : ନମସ୍କାର ଆଜ୍ଞା

ଓମ୍ : କ'ଣ ହେଲା, ଆପଣ ପୁଣି ରେସିଡେନ୍ସକୁ ଆସିଲେ ?

ବିଦ୍ୟାଧର : କ୍ଷମା କରିବେ, ମୁଁ ଆପଣଙ୍କ ପାଖକୁ ଆସିନାହିଁ ।

ଓମ୍ : ମୋ ରେସିଡେନ୍‌ସକୁ ଆସିଛନ୍ତି ଅଥଚ କହୁଛନ୍ତି କ'ଣ ନା ମୋ ପାଖକୁ ଆସି ନାହାନ୍ତି ।

ବିଦ୍ୟାଧର : ମୁଁ ମୋନାଲିସା ପାଖକୁ ଆସିଛି ।

ମହେଶ : ଆପଣ ବିଦ୍ୟାଧର ବାବୁନା ?

ବିଦ୍ୟାଧର : ଆରେ ସାର୍ ଆପଣ ? ମୁଁ ଚିହ୍ନି ପାରିନି, ସାର୍ ନମସ୍କାର । ଝିଅ ଖଣ୍ଡେ ଜନ୍ମ ଦେଇଛନ୍ତି, ମଣିଷ ତ ନୁହେଁ ଦେବୀ । ମୁଁ ଶିକ୍ଷକ ହୋଇ ବର୍ଷବର୍ଷ ଧରି ଚେଷ୍ଟାକରି ଯାହା ପାରି ନଥିଲି ସିଏ ମୋ ଛାତ୍ରୀ ଲିସା ଆଜି ପ୍ରମାଣ କରି ଦେଖେଇ ଦେଲା ।

ଓମ୍ : ଓ ଲିସା ତା' ହେଲେ ଆପଣଙ୍କ ଛାତ୍ରୀ ।

ବିଦ୍ୟାଧର : କେବଳ ଛାତ୍ରୀ ନୁହେଁ ଶ୍ରେଷ୍ଠ ଛାତ୍ରୀ, ପଙ୍କଜ ଭଳିଆ ଗୁରୁଲଘୁ ଜ୍ଞାନ ନଥିବା ଦୁର୍ଦ୍ଦାନ୍ତ ଲୋକ ଯାହାକୁ ଆପଣଙ୍କ ପ୍ରଶାସନ ହାତଯୋଡ଼ି ଶହେ ସଲାମ କରେ, ଯିଏ ମୋତେ ତା'ର ଶିକ୍ଷକକୁ କଲର୍ ଧରି ବିଚ୍ ରାସ୍ତାରେ ଘୋଷାରେ ତାକୁ ଲିସା ମୋ ଛାତ୍ରୀ ଚାପୁଡ଼ା ମାରି ମୋ ଗୋଡ଼ ତଳେ ପକେଇ ପାରିଛି । ଜଣେ ଗୁଣ୍ଡା ବଦମାସ୍‌କୁ ବାଟକୁ ଆଣିପାରିଛି । ସିଏ ଶ୍ରେଷ୍ଠ ଛାତ୍ରୀ ନୁହେଁ ତ ଆଉ କ'ଣ ?

ଓମ୍ : ମୁଁ କ'ଣ କହୁଥିଲି ଡେଡ଼ି ପଙ୍କଜ ସହିତ ଲିସାର ସଂପର୍କ ଜାଣିଲେ ତ ?

ମହେଶ : ବିଦ୍ୟାଧର ସାର୍ ! ଏ କ'ଣ ସତ ?

ବିଦ୍ୟାଧର : ହଁ, ପଙ୍କଜର ମୁହଁ ହେଲାନି ମୋତେ କ୍ଷମା ମାଗିବାକୁ । ଲିସାକୁ ନେଇ ସ୍କୁଲ୍ ଗଲା ଶହଶହ ପିଲାଙ୍କ ଆଗରେ ମୋ ଗୋଡ଼ଧରି ଭୋଭୋ କରି କାନ୍ଦିଲା, କ୍ଷମା ମାଗିଲା ସ୍କୁଲ୍‌ର ଛାତ ଭାଙ୍ଗି ଆଉଥରେ ଛାତ ପକଉଛି । ନିଜ ହାତରୁ ଟଙ୍କା ଖର୍ଚ୍ଚକରି ଆଉ ଦି'ଟା ରୁମ୍ କରିବ ବୋଲି କହି ଆସିଛି । କି ପରିବର୍ତ୍ତନ ମୁଁ ଆସିଛି ମୋ ମାଆକୁ ମୋ ଲିସାକୁ ଧନ୍ୟବାଦ ଦେବାକୁ ।

ମହେଶ : ଧନ୍ୟବାଦ ଦେବେ ? କାହାକୁ ? ଲିସାକୁ ? ଯିଏକି ନଜ ସ୍ୱାମୀ ଆଗରେ ଅନ୍ୟଜଣେ ପୁରୁଷ ସହିତ ସଂପର୍କ –

ବିଦ୍ୟାଧର : ମହେଶ ବାବୁ ! ଆପଣ କ'ଣ କହୁଛନ୍ତି ?

ଓମ୍ : ପଙ୍କଜ ସହିତ ଲିସାର ସଂପର୍କ କ'ଣ ?

ବିଦ୍ୟାଧର : ଜଣେ ଭାଇ ସହିତ ଜଣେ ଭଉଣୀର ସଂପର୍କ ଯାହା ।

ଓମ୍ : ମିଛ କଥା, ଲିସା ପଙ୍କଜକୁ ପିଲାଦିନରୁ ଭଲପାଏ ପ୍ରେମକରେ ।

ବିଦ୍ୟାଧର : ନା

ଓମ୍ : ମୋ ପାଖରେ ପ୍ରମାଣ ଅଛି, ପଙ୍କଜର ଫଟୋକୁ ଲିସା ଏବେବି ତା' ଡାଏରିର କଭର୍ ଉପରେ ସାଇତି ରଖିଛି, ଏଇ ଦେଖନ୍ତୁ – (ମହେଶ ହାତକୁ ଦିଏ)

ମହେଶ : (ଚମକି ଉଠି ବିଦ୍ୟାଧରକୁ ଦିଅନ୍ତି)

ବିଦ୍ୟାଧର : (ଫଟୋ ଦେଖନ୍ତି, ଆଖିରୁ ପାଣି ଆସିଯାଏ) ଲିସା ! ସତରେ ତୁ ଏ ପର୍ଯ୍ୟନ୍ତ ସେ ସ୍ମୃତିକୁ ମନେ ରଖିଛୁ ?

ଓମ୍ : ଖାଲି ଫଟୋ କାହିଁକି ? ପଙ୍କଜ ଉପହାର ଦେଇଥିବା ଏଇ କଲମ ।

ବିଦ୍ୟାଧର : କଲମ (ଦେଖନ୍ତି) ଆରେ ସେ କଲମଟା ବି ଏ ଯାଏ ଅଛି ।

ଓମ୍ : ଏବେ କୁହନ୍ତୁ ସାର୍ ଆପଣଙ୍କ ଛାତ୍ରୀ ।

ବିଦ୍ୟାଧର : ଓ ଏଇ କଲମ ଆଉ ଫଟୋ ଆପଣଙ୍କ ମନରେ ସନ୍ଦେହ ଆଣିଛି ।

ଓମ୍ : ତେଣୁ ଆପଣ ତ ଅଛନ୍ତି ତେଡ଼ି ବି ଆସିଛନ୍ତି ମୁଁ ଲିସାଠୁ ମୁକ୍ତି ଚାହେଁ ।

ବିଦ୍ୟାଧର : (ମହେଶ କ'ଣ କହିବାକୁ ଯାଉଥିଲେ ଅଟକାଇ) ଆପଣଙ୍କୁ ଲିସାଠୁ ମୁକ୍ତି କରିଦେବା । କିନ୍ତୁ ଚରିତ୍ରହୀନାର ଆଳରେ ନୁହେଁ ।

ଓମ୍ : ଆଉ

ବିଦ୍ୟାଧର : ଆପଣଙ୍କୁ ପ୍ରଥମେ ମୁଁ ସଂଦେହରୁ ମୁକ୍ତ କରିବି, ତା'ପରେ

ଓମ୍ : ସଂନ୍ଦେହ ?

ବିଦ୍ୟାଧର : ହଁ ଏ ଫଟୋ କାହାର ?

ଓମ୍ : ପଙ୍କଜର,

ମହେଶ : କେମିତି ଜାଣିଲେ ? (ଭୋଲା ଘରକୁ ପଶିଯାଇ ଆଉଗୋଟେ ଫଟୋ ଆଣନ୍ତି) ଏ ଫଟୋ

ଓମ୍ : ସେ ତ ଏକା ଫଟୋ ।

ମହେଶ : ତା' ମାନେ ଭୋଲା କ'ଣ ଲିସାକୁ ପ୍ରେମ କରେ ?

ବିଦ୍ୟାଧର : ମୁଁ ଜାଣି ନ ଥିଲି ଯେ ଏ ଫଟୋ ଏ କଲମ ଦିନେ ଲିସା ଜୀବନରେ ଝଡ଼ ଆଣିବ ।

ଓମ୍ : ଏ କଲମ ତେବେ କାହାର ?

ମହେଶ : କହନ୍ତୁ ସାର୍ ଆପଣ କହନ୍ତୁ - ମୁଁ ଦେଖେ ଲିସା କୁଆଡ଼େ ଗଲା ?

ବିଦ୍ୟାଧର : ଆସନ୍ତୁ - (କହିକହି ଆଗାନ୍ତି)

ଆଜିକୁ ପ୍ରାୟ ପନ୍ଦର ଷୋହଳ ବର୍ଷ ତଳର କଥା, ମହେଶ ମହାନ୍ତି ଏଇଠି B.D.O. ଥାଆନ୍ତି ତାଙ୍କର ଏକମାତ୍ର ଝିଅ ଲିସା ମୋ ସ୍କୁଲ୍‌ରେ ଷଷ୍ଠ ଶ୍ରେଣୀରେ ପଢୁଥିଲା ।

(ଧୀରେ ଧୀରେ ଆଲୋକ ଏମାନଙ୍କୁ ଅନ୍ଧାରକୁ ନେଇଯାଇ ଅତୀତକୁ ଆଲୋକିତ କରେ ।)

## FLASH BACK

## FLASH BACK

(ବାହାରୁ ଇତୁ ଡାକି ଡାକି ଆସେ)

ଇତୁ : ଲିସା, ଲିସା ଏ ଲିସା; (ଲିସା ଜଣେ ୧୦-୧୧ ବର୍ଷର ବାଳିକା ଭିତରୁ ଆସେ)

ଲିସା : କିଏ ? ଆଲୋ ଇତୁ ! ତୁ କୁଆଡ଼େ ଆସିଛୁ ?

ଇତୁ : ଆଜି ପରା ମୋର Birthday.

ଲିସା : ମୁଁ ସକାଳୁ wish କରିଦେଇଛି ।

ଇତୁ : ମାମି କହିଲେ ତୁ ଯା ଲିସାକୁ ଡାକି ଆଣିବୁ ।

ଲିସା : କ'ଣ ପାଇଁ ?

ଇତୁ : ତୁ ଆଜି ସନ୍ଧ୍ୟାରେ ଆମଘରେ ଖାଇବୁ, ହେଲା, ଚାଲ ।

ଲିସା : ସନ୍ଧ୍ୟା ବେଳେ ସାର୍ ଆସିବେ ଯେ !

ଇତୁ : ସାର୍ ଆସନ୍ତୁ, ତୁ ତ ନଥିବୁ, ସାର୍ ଆସିଲେ ଆଉ କାହାକୁ ପଢ଼େଇବେ, ବଳେ ପଳେଇବେ ।

ଲିସା : ତା' ପରେ, ତା' ପରେ ବସେଇବେ ଯେତେବେଳେ ନା !

ଇତୁ : ଏ ମା ତମ ସାର୍ ପିଟନ୍ତି ।

ଲିସା : ଖାଲି ପିଟନ୍ତିନି, kneel down କରି ଦିଅନ୍ତି, ଉଠ୍ ବସ ଚେୟାର ବି କରିଦିଅନ୍ତି ।

ଇତୁ : ଆମ ସାର୍ ନା କିଛି ବି କହନ୍ତିନି । (କାହ୍ନୁ ଆସେ ହାତରେ ଝାଡ଼ୁ ଧରି)

କାହ୍ନୁ : ଲିସା ତମ ମାମି ଡାକୁଛନ୍ତି ।

ଇତୁ : କାହ୍ନୁ ! ତମ ଘର ବି ଏଇଠି ?

କାହ୍ନୁ : ହଁ, ଆସ ଲିସା ମା' ଡାକୁଛନ୍ତି(ଯାଏ)

ଇତୁ : ଲିସା କାହ୍ନୁଘର ଏଇଠି ?

ଲିସା : ନା, ଏଟା ନୁହେଁ, ହାୟ ସେଇଠି ଯୋଉ ଘରଟା ଦିଶୁଛି ।

ଇତୁ : ସେମାନେ ଗରିବ ?·

ଲିସା : ହଁ, ତା'ର ମାମି ନାହାନ୍ତି ।

ଇତୁ : ଆଉ ଡେଡ଼ି ?

ଲିସା : ଡେଡ଼ି ନୁହେଁ ବାପା ମୋ ଡେଡିଙ୍କ ଅଫିସ୍‌ରେ କାମ କରନ୍ତି, ସେ ଅଫିସ୍ ଯାଇଛନ୍ତି ଯେ କାହ୍ନୁ ଆମଘରେ ଝାଡ଼ୁ ଦଉଛି ।(ଆସନ୍ତି ମହେଶ)

ମହେଶ : ଆରେ ଲିସା ! କ'ଣ ହେଲା ? ଏ ଝିଅ ?

ଲିସା : ଇଏ ମୋ Friend ଇତୁ ।

ଇତୁ : Uncle ଆଜି ମୋ Birthday ମୁଁ ଲିସାକୁ Invite କରିବାକୁ ଆସିଛି ।

ମହେଶ : ଆଚ୍ଛା, happy birthday to you. ଯା ଲିସା ଶୀଘ୍ର ଫେରି ଆସିବୁ ।

ଲିସା : ସାର୍ ଆସିବେ ଯେ ?

ମହେଶ : ମୁଁ କହିଦେବି - ଯା (ଯାଆନ୍ତି ଅଂଧାର)

## FLASH BACK NO - 2

(ଭୋଳା ଏପଟ ସେପଟ ହେଉଥାଏ ଡାକୁଥାଏ)

ଭୋଳା : କାହ୍ନୁ! ଏ କାହ୍ନୁ ଆରେ କୁଆଡ଼େ ଗଲୁ (କାହ୍ନୁ ଆସେ) କିରେ କ'ଣ କରୁଥିଲୁ ?

କାହ୍ନୁ : ପାଠ ମୁଖସ୍ଥ କରୁଥିଲି ପରା ।

ଭୋଳା : ଶୁଣ, ହାଣ୍ଡିରେ ପଖାଳ ଅଛି, ଚୁଲିମୁଣ୍ଡରେ ଆଳୁପୋଡ଼ା ଅଛି, ଲଙ୍କାଗୁଣ୍ଡ ସେହି ଚୁଲି ପାଖରେ ଅଛି ଆଳୁଟାକୁ ଚକଟି ଦେଇ ପଖାଳ ଖାଇ ସ୍କୁଲ୍ ଚାଲିଯିବୁ ।

କାହ୍ନୁ : ମୁଁ ଆଜି ସ୍କୁଲ୍ ଯିବିନି ।

ଭୋଳା : କାହିଁକି ?

କାହ୍ନୁ : ମୋର ତ କଲମ ନାହିଁ, ସ୍କୁଲ୍ ଯାଇ କ'ଣ କରିବି, କାଲି ସାର୍ ପିଟିଲେ କହିଛନ୍ତି କଲମ ନ ନେଇ ସ୍କୁଲ୍ ଆସିଛୁ କାହିଁକି ।

ଭୋଳା : କ'ଣ କରିବିରେ ବାପା ପଇସା ନାହିଁ, ଆଉ ଚାରିପାଞ୍ଚ ଦିନ ରହିଯା ଦରମା ମିଳିଗଲେ ବଢ଼ିଆ କଲମଟେ ଆଣିଦେବି । (ବିଦ୍ୟାଧର ସାର୍ ଆସନ୍ତି)

ବିଦ୍ୟାଧର : କାହ୍ନୁ ! ଏ କାହ୍ନୁ ।

କାହ୍ନୁ : ବାପା ସାର୍ ଆସିଲେଣି ।

ଭୋଳା : ସାର୍ ଜୁହାର ସାର୍, କ'ଣ କରିବି ସାର୍ ପୁଅଟାର କଲମଟେ ନାହିଁ ତା'ର କିଛି ଦୋଷ ନାହିଁ, ମୁଁ ତାକୁ କଲମଟେ ଆଣି ଦେଇନି । ଦରମା ପାଇନି ସାର୍ ।

ବିଦ୍ୟାଧର : ହଉ ହେଲା, କିରେ କାହ୍ନୁ ଆଜି କ'ଣ ସ୍କୁଲ୍ ଯିବୁନି ?

କାହ୍ନୁ : କଲମ...

ଭୋଳା : ସକାଳଠୁ ଜିଦ୍ ଲଗେଇଛି କଲମ ଆଣି ନ ଦେଲେ ସ୍କୁଲ୍ ଯିବନି ।

ବିଦ୍ୟାଧର : ମୁଁ ତାକୁ କାଲି ସେହିକଥା କହିଥିଲି, ହଉ ଏଇ ନେ କଲମ, ଚାଲ ।

କାହ୍ନୁ : କଲମ

ଭୋଳା : ଆରେ ଆରେ କାହ୍ନୁ ଦେଖ୍ ସାର୍ ତୋ ପାଇଁ କଲମ ଆଣିଛନ୍ତି ।

ବିଦ୍ୟାଧର : କାଲି ତା'ର କଲମ ନଥିଲା ବୋଲି ବାଡ଼େଇ ଦେଲି ମନଟା ଭାରି କଷ୍ଟ ହେଲା । ତେଣୁ ଆଜି ଆସିଲା ବେଳେ କଲମଟେ ନେଇ ଆସିଲି, ନେ କାହ୍ନୁ ! (କଲମଟା ନେଇ ଦେଖେ ଅଂଧାର)

## FLASH BACK NO - 3

(ମହେଶ ବାବୁଙ୍କ ସ୍ତ୍ରୀ ବିନୋଦିନୀ ଦେବୀ କାହାକୁ ଯେମିତି ଅପେକ୍ଷା କରିଥାନ୍ତି)

ବିନୋଦିନୀ: କୁଆଡ଼େ ଗଲା ଏ ଝିଅଟା ! ଘରିଟା ତିରିଶ ହେଲାଣି । ଭୋଳା ! ଭୋଳା !

ଭୋଳା : (ପହଞ୍ଚି) କ'ଣ କହୁଥିଲେ କି ମାଆ ।

ବିନୋଦିନୀ: କାହ୍ନୁ ସ୍କୁଲରୁ ଆସିଲାଣି ?

ଭୋଳା : କାହିଁ ତ ଆସିନି, ଘରିଟା ବାଜୁ।

ବିନୋଦିନୀ: ତୁ ଆଜି ଅଫିସ୍ ଯାଇନୁ ବୋଲି କ'ଣ ଘରିଟା ବାଜିବନି - ସାଢ଼େ ଘରିଟା ହେଲାଣି ପରା ! ଏଇ ତ କାହ୍ନୁ ଆସୁଛି । କିରେ କାହ୍ନୁ ଆଜି କାହିଁକି ଏତେ ଡେରି ?

## FLASH BACK NO - 3

କାହ୍ନୁ : ଆଜି ଆମ Result ବାହାରିଲା ତ ସେଥିପାଇଁ ଡେରି ହେଲା ।

ବିନୋଦିନୀ : Result ବାହାରିଲା ? ତୋର କ'ଣ ହେଲା ?

କାହ୍ନୁ : ମୁଁ ଫାଷ୍ଟ ହେଇଛି ।

ବିନୋଦିନୀ : ଫାଷ୍ଟ ହେଇଛୁ ? ଆଉ ଲିସା ?

କାହ୍ନୁ : ସେ ସେକେଣ୍ଡ ହୋଇଛନ୍ତି ।

ବିନୋଦିନୀ : ସେ ଜୀବନସାରା ସେମିତି ସେକେଣ୍ଡ ହେଉଥାଉ, ସେଟା ଗଲା କୁଆଡ଼େ ।

କାହ୍ନୁ : ଏଇ ପଛରେ ଆସୁଛି ।

ବିନୋଦିନୀ : ହଉ ଭୋଲା, ଯା ଗଛଗୁଡ଼ାକରେ ଟିକିଏ ପାଣି ଦେଇଦେ ।

ଭୋଲା : ଆଜ୍ଞା ମା' ଯାଉଛି (ଯାଏ କାହ୍ନୁକୁ ନେଇ) ଲିସା ଆସେ

ବିନୋଦିନୀ : କ'ଣ ମହାରାଣୀ ! ଏତେ ଡେରିରେ ?

ଲିସା : ମମି ! ଆଜିନା ଆମ Result ବାହାରିଲା ।

ବିନୋଦିନୀ : କ'ଣ ହେଲା ସେଇଠୁ ? କାହ୍ନୁ ତ ଫାଷ୍ଟ ହେଇଛି, ତୁ ?

ଲିସା : ମୁଁ ସେକେଣ୍ଡ ହେଇଛି ।

ବିନୋଦିନୀ : ଲାଜ ନାହିଁ ତୋତେ ! କହୁଛୁ କ'ଣ ନା ସେକେଣ୍ଡ ? ଭୋଲା Watchmanର ପୁଅ କାହ୍ନୁ, ସେ ହେବ ଫାଷ୍ଟ ଆଉ ତୁ B.D.O.ର ଝିଅ କ'ଣନା ସେକେଣ୍ଡ ।

ଲିସା : ମୁଁ କ'ଣ କରିବି ଯେ, ସେ ବେଶି ନମ୍ବର ରଖିଲା ସେ ଫାଷ୍ଟ ହେଲା, ମୋର ତା'ଠୁ କମ୍ ନମ୍ବର ରହିଲା ମୁଁ ସେକେଣ୍ଡ ହେଲି ।

ବିନୋଦିନୀ : କାହିଁକି, ତୋତେ ବେଶି ନମ୍ବର ରଖିବାକୁ କିଏ କ'ଣ ମନା କରୁଛି ? ଜାଣୁ ତା' ବାପ ଜଗୁଆଳୀ ପିଅନ ଆଉ ତୋ ବାପ B.D.O. ତାକୁ ଦରମା ଦିଅନ୍ତି ।

ଲିସା : ସାର୍ କ'ଣ ଏଗୁଡ଼ା ଦେଖୁଛନ୍ତି ସାର୍ ତାଙ୍କର ଖାତା ଦେଖିଲେ ନମ୍ବର ଦେଲେ ।

ବିନୋଦିନୀ : ଚୁପ୍ କର ବଦ୍‌ମାସ୍ (ମହେଶ ଆସନ୍ତି)

ମହେଶ : କ'ଣ ହେଲା ?

ବିନୋଦିନୀ : କ'ଣ ଆଉ ହେବ, ମହାରାଣୀଙ୍କର ରେଜଲ୍ଟ ବାହାରିଛି ।

ମହେଶ : ରେଜଲ୍‌ଟ ବାହାରିଛି ? କ'ଣ ହେଇଛି ?

ବିନୋଦିନୀ : କ'ଣଟା ଆଉ ହେବ ସେକେଣ୍ଡ ।

ମହେଶ : ଏଁ, ସେକେଣ୍ଡ ହେଇଛି ? ତା' ହେଲେ ଆଜି ଗୋଟେ ଫଙ୍କସନ୍ ମନାଅ ।

ବିନୋଦିନୀ : ତା'ହେଲେ, ତମକୁ ବି ତ ଲାଜ ନାହିଁ । ଭୋଳା ଢଗୁଆଳୀର ପୁଅ ହେବ ଫାଷ୍ଟ ଆଉ ତମ ଝିଅ ହେବ ସେକେଣ୍ଡ ।

ମହେଶ : ସେଟା ଭଲ ପଢ଼େ ।

ବିନୋଦିନୀ : ସିଏ ଭଲ ପଢୁଛି ତ ? ଇଏ କାହିଁକି ଭଲ ପଢ଼ିବନି ? ଯା ପାଇଁ କ'ଣଟା ଅଭାବ ଅଛି ? ତମର କ'ଣ ଚନ୍ଦା ନା ଦକ ? ଝିଅ ପଢ଼ିଲା କେତେ ନ ପଢ଼ିଲା କେତେ ? ତମେ ଭଲ ତମ ଘିକିରି ଭଲ ।

ମହେଶ : ଓ ହ ମୁଁ ଆଉ କ'ଣ କରିବି କୁହ ?

ବିନୋଦିନୀ : ମୋତେ କାହିଁକି ପଚାରୁଛ, ତାକୁ ପଚାର ନ ହେଲେ ତାଙ୍କ ସାର୍‌ଙ୍କୁ ପଚାର ଯେମିତି ହେଉ ଆଗାମୀ ପରୀକ୍ଷାରେ ଲିସା ଯେମିତି ଫାଷ୍ଟ ହୁଏ ।

ମହେଶ : ଲିସା ଫାଷ୍ଟ ହେବ... (କ'ଣ ଭାବିଚ...) (ଅଂଧାର)

## ପରବର୍ତ୍ତୀ ଦୃଶ୍ୟ

(ବିଦ୍ୟାଧର ସାର୍ ଆସନ୍ତି, ଏପଟ ସେପଟ ହୁଅନ୍ତି ମହେଶ ବାହାରି ଆସନ୍ତି)

ବିଦ୍ୟାଧର : ସାର୍ ନମସ୍କାର ।

ମହେଶ : ଆରେ ବିଦ୍ୟାଧର ବାବୁ ! ନମସ୍କାର ଆସନ୍ତୁ(ବିନୋଦିନୀ ଆସନ୍ତି) ଇଏ ବିଦ୍ୟାଧର ସାର୍ ଲିସାର ହେଡ୍‌ସାର ।

ବିନୋଦିନୀ : ସାର୍ ନମସ୍କାର ।

ବିଦ୍ୟାଧର : ନମସ୍କାର ମୋତେ ସାର୍ ଡକେଇ ପଠେଇଲେ ।

ମହେଶ : ହଁ ହଁ ମୁଁ ଡାକୁ ଥିଲି (ଲିସା ବାହାରି ଆସେ) ଏଇ ଝିଅଟା ପାଇଁ ।

ବିନୋଦିନୀ : ସାର୍ ଇଏ ଲିସା କଥା ଟିକିଏ ବୁଝନ୍ତୁ ।

ବିଦ୍ୟାଧର : କ'ଣ ହେଇଛି ତା'ର ? ଭଲପିଲା ତ । obedient ପାଠଶାଠ ପଢୁଛି କଥା ମାନେ ଶାନ୍ତଶିଷ୍ଟ ବାସ୍ ଆଉ କ'ଣ ?

ବିନୋଦିନୀ : ପାଠ ପଢୁଛି କାହିଁ ଫାଷ୍ଟ ତ ହୋଇପାରୁନି ।

ବିଦ୍ୟାଧର : ଚେଷ୍ଟାକଲେ ହେବ, କିରେ ଆଉ ଟିକିଏ ଚେଷ୍ଟାକର ।

ମହେଶ : ମୁଁ କ'ଣ କହୁଥିଲି କି ସାର୍ ଆପଣ ସନ୍ଧ୍ୟାବେଳେ ଘଣ୍ଟେ ଘଣ୍ଟେ

ବିନୋଦିନୀ : ଆପଣ ଯାହା ନେବେ ଆମେ ଦେବୁ ।

ବିଦ୍ୟାଧର : ନାଇଁ ମାଡ଼ାମ୍ ମୁଁ ଟିଉସନ୍ କରେନି, ଯଦି ଅତି କହୁଛନ୍ତି ମୁଁ ସନ୍ଧ୍ୟା ବେଳେ ଘଣ୍ଟେ ଘଣ୍ଟେ ଦେଖିଯିବି ।

ମହେଶ : ସେତିକି ନ ହେଲେ କରନ୍ତୁ, (ଆପଣ ଖାଲି ଆସନ୍ତୁ, ତା'ପରେ)

ବିନୋଦିନୀ : ସିଏ ନିଶ୍ଚୟ ଫାଷ୍ଟ ହେବ ।

ବିଦ୍ୟାଧର : ହଉ ହେଲା ମୁଁ ଆସିବି ।

ବିନୋଦିନୀ : ଆସନ୍ତୁ ସାର୍ ଏମିତି ବାହାରେ ଛିଡ଼ା ହୋଇଥିବେ ! ଭିତରକୁ ଆସନ୍ତୁ (ବାହାରନ୍ତି ଅଂଧାର)

(ଅନ୍ୟଏକ ଦିନ ରାସ୍ତାରେ କଥା ହେଇ ଫେରୁ ଥାଆନ୍ତି ଇନ୍ଦୁ, କାହ୍ନୁ ଓ ଲିସା)

ଇନ୍ଦୁ : କାହ୍ନୁ ଏଥର ତୋର ପରୀକ୍ଷାରେ କେମିତି ହୋଇଛି ।

କାହ୍ନୁ : ସବୁ ପରୀକ୍ଷାରେ ଯେମିତି ହୁଏ ।

ଇତୁ : ଲିସା ତୋର ?

ଲିସା : ମୋର ସେମିତି ଯେମିତି ହୁଏ ।

ଇତୁ : ତୋର ଆଉ ଚିନ୍ତା କ'ଣ, ବିଦ୍ୟାଧର ସାର୍ ତ ନିଜେ ପଢ଼ଉଛନ୍ତି ନିଜେ ନମ୍ବର ଦେଇ ଦେବେ । ବୁଝିଲୁ କାହ୍ନୁ ଏଥର ତ୍ତୋର ଫାଷ୍ଟ ହେବାର ନାହିଁ ।

କାହ୍ନୁ : ଆଉ ?

ଇତୁ : ନା ନାରେ ବାବା ଏଥର ଲିସା ଫାଷ୍ଟ ।

କାହ୍ନୁ : ଭଲ ହେବ, ଲିସାଟା ଫାଷ୍ଟ ହେଇଯାଆନ୍ତେ କି ମୋ ବାପା ମୋତେ ମାରନ୍ତେନି ।

ଲିସା : ତୁ ଫାଷ୍ଟ ହେଲେ ତୋ ବାପା ତୋତେ ମାରନ୍ତି ?

କାହ୍ନୁ : ଆଉ, ତମେ ସେକେଣ୍ଡ ହୋଇଯାଉଛ ତମ ମାମି ଦୁଃଖ କରୁଛନ୍ତି । ମୋ ବାପାଙ୍କୁ ଗାଳି ଦଉଛନ୍ତି । ମୋ ବାପା ମୋତେ ପିଟୁଛନ୍ତି ।

ଲିସା : କାହ୍ନୁ... ।

ଇତୁ : ହଉ ଛାଡ଼ ଏଥର ଆଉ ମାଡ଼ ଖାଇବୁନି । ତମେ ଯାଅ ମୁଁ ଯାଉଛି ।

(ଅଂଧାର)

ଅନ୍ୟ ଏକ ଦିନ

କାହ୍ନୁ ଛିଡ଼ା ହୋଇଥାଏ ଭୋଳା ତାକୁ ତାଗିଦ କରୁଥାଏ ।

ଭୋଳା : କ'ଣ କହିଲୁ ! ତୁ ଫାଷ୍ଟ ହୋଇଛୁ ? ହଇରେ ତୋତେ କେତେଥର ମନା କଲିଣି ତୁ ଫାଷ୍ଟ ହେବୁନି ବୋଲି । ତୁ କ'ଣନା ମୋ କଥାକୁ ପତରରେ ପକଉନୁ ।

କାହ୍ନୁ : ମଲା, ମୁଁ କ'ଣ ଜାଣି ଜାଣି ଫାଷ୍ଟ ହଉଛି ? ମୁଁ ମୋର ପରୀକ୍ଷା ଦଉଛି । ସାର୍ ମୋତେ ଫାଷ୍ଟ କରିଦଉଛନ୍ତି ।

ଭୋଳା : ସାର୍ ? ସାର୍ ତୋତେ ଫାଷ୍ଟ କରିଦଉଛନ୍ତି, ସେ କଥା କହୁଛୁ; ଚାଲ ଚାଲ ତୋ ସାର୍ ପାଖକୁ ! (ଆସନ୍ତି ବିଦ୍ୟାଧର ସାର୍)

ବିଦ୍ୟାଧର : କ'ଣ ହେଲା କି ଭୋଳା ?

ଭୋଳା : ସାର୍ ! ଆପଣଙ୍କର ଆମେ କି ଦୋଷ କରିଥିଲୁ ?

ବିଦ୍ୟାଧର : କାହିଁକି ?

ଭୋଳା : ମୋର ଗୋଟେ ବୋଲି ପୁଅ । ଏମିତି ଫାଷ୍ଟ କରି ଆମକୁ କାହିଁକି ଲୋକହସା କରୁଛନ୍ତି କହିଲେ ? ଆପଣଙ୍କର ଗୋଡ଼ ଧରୁଛି । ମୋତେ ରକ୍ଷା କରନ୍ତୁ ।

ବିଦ୍ୟାଧର : ଇଏ ତ ବଡ଼ ଅଦ୍ଭୁତ କଥା । (ଅଂଧାର)

## ଅନ୍ୟଏକ ଦିନ

(ଲିସା ମନମାରି ବସିଥାଏ ଇତୁ ପାଖରେ ବସିଥାଏ)

ଇତୁ : ତୁ ଯେତେ ଚେଷ୍ଟା କଲେ ବି କାହ୍ନୁକୁ ଟପି ଫାଷ୍ଟ ହୋଇପାରିବୁନି ।

ଲିସା : ସେ ଭଲପଢ଼େ, ମୁଁ ଗଧ ।

ଇତୁ : ନା, ତା' ପାଖରେ ଗୋଟେ କଲମ ଅଛି ସେ କଲମରେ ଯିଏ ଲେଖିବ ସେ ଫାଷ୍ଟ ହବ

ଲିସା : ସେଟା କ'ଣ କୁହୁକ କଲମ ?

ଇତୁ : ହଁ, ତୁ ଯଦି କୌଣସିମତେ ତାଠୁ କଲମଟା ଆଣି ପାରିବୁ ତା'ହେଲେ ତୁ ନିଶ୍ଚୟ ଫାଷ୍ଟ ହେବୁ ।

ଲିସା : ସତ କହୁଛୁ ?

ଇତୁ : ହଁ ତା' ସାଙ୍ଗ ଯତୀନ କହୁଥିଲା, ମୁଁ ନିଜେ ଶୁଣିଛି ।

ଲିସା : ସେ କଲମଟା ଯଦି... ଆଣି ହୁଅନ୍ତା...

ଇତୁ : କେମିତି ଆଣିବା...(ଚିନ୍ତା କରନ୍ତି ଦୁହେଁ କିଛି ସମୟ ପାଇଁ) ଏ ଲିସା ! ଶୁଣ୍ ଗୋଟେ ବୁଦ୍ଧି କରିବା ।

ଲିସା : କ'ଣ ?

ଇତୁ : ଶୁଣ୍ (ତା' କାନ ପାଖରେ କହନ୍ତି) ହେଲା ?

ଲିସା : ହଁ ବଢ଼ିଆ ହେବ ସେ ଆସୁ ।

ଇତୁ : ଏଇ ତ କାହ୍ନୁ ସ୍କୁଲରୁ ଫେରୁଛି(କାହ୍ନୁ ଆସେ)

ଲିସା : କାହ୍ନୁ ଏ କାହ୍ନୁ ।

କାହ୍ନୁ : କ'ଣ ହେଲା ?

ଲିସା : ଦେଖୁଛୁନା ସେ ପିଜୁଳି ଗଛରେ କେତେ ସୁନ୍ଦର ପିଜୁଳି ।

କାହ୍ନୁ : ହଁ ତ ପୁରା ପାଚିଲା ପିଜୁଳି ।

ଇତୁ : ଆଣିବା କେମିତି କହିଲୁ ?

କାହ୍ନୁ : ରହ ମୋ ବହି ବେଗ୍‌ଟା ରଖିଦେଇ ଆସେ ଗଛ ଚଢ଼ି ତୋଳି ଆଣିବ ।

ଲିସା : ତୁ ଗଛ ଚଢ଼ି ଜାଣୁ ?

କାହ୍ନୁ : ହଁ,

ଇତୁ : ତା'ହେଲେ ଗଛକୁ ଚଢ଼ି ଯାଉନୁ, ବେଗ୍‌ଟା ଏଇଠି ଥାଉ, ପିଜୁଳି ତୋଳି ଆଣିଲା ପରେ ନେବୁ ।

କାହ୍ନୁ : ହଉ ତେବେ ମୋ ବେଗ୍ ଏଇଠି ରହିଲା ।

ଲିସା : ହଁ ଆମେ ଜଗିଛୁ ତୁ ଯା (କାହ୍ନୁ ଯାଏ, ଏମାନେ ଖୁସିରେ ବେଗ୍‌ଧରି ନିଅନ୍ତି ।)

ଇତୁ : ବାସ୍ - କାହ୍ନୁ ଗଛକୁ ଚଢ଼ି ଗଲାଣି । କଲମଟା କାଢ଼ିନେ ।

ଲିସା : ନାଇଁ ମୋତେ ଡର ଲାଗୁଛି ସିଏ କାଳେ ଦେଖିବେ ।

ଇତୁ : ମୁଁ ତାକୁ ଘଣ୍ଟିଛି, ତୁ ପେନ୍ କାଢ଼ ।

ଲିସା : (ବେଗ୍ ଦେଖେ)କାହିଁ, ବେଗରେ ତ ପେନ୍ ନାହିଁ ।

ଇତୁ : (ଜୋରରେ) କାହ୍ନୁ ଉଠିଲୁ ।

କାହ୍ନୁ : ମୁଁ ଉରିଟା ପିଙ୍କୁଳି ତୋଳି ସାରିଲିଣି ।

ଇତୁ : ଆମେ ତ ତିନିଜଣ ଭାଗ ଛିଣ୍ଡିବନି ଆଉ ଦି'ଟା ତୋଳ ଲିସା ହେଲା ?

ଲିସା : ବେଗ୍‌ରେ ପେନ୍ ନାହିଁ କି ଫେନ୍ ନାହିଁ ।

ଇତୁ : ଓ ହ ବେଗ୍‌ରେ ନାଇଁ ଯଦି ବାକ୍ସ ଦେଖ, ଜ୍ୟାମିତି ବାକ୍ସ ।

ଲିସା : ବାକ୍ସ ? ହଁ ଜ୍ୟାମିତିବାକ୍ସରେ ଅଛି ।

ଇତୁ : ନେ, ନେଇଯା । (ଲିସା ଚୁପ୍‌କି କଲମଟା କାଢ଼ିନିଏ, କାହ୍ନୁ ପିଙ୍କୁଳି ଧରି ଆସେ)

କାହ୍ନୁ : ନିଅ, କିଏ କୋଉଟା ନବ ।

ସମସ୍ତେ : ମୋର ଏଇଟା -(ସମସ୍ତେ ଗୋଟେ ଗୋଟେ ଉଠାନ୍ତି, ଅଂଧାର)

## ଅନ୍ୟଏକ ଦିନ

(ଡାକି ଡାକି ଆସନ୍ତି ବିନୋଦିନୀ)

ବିନୋଦିନୀ: ଭୋଲା ! ଏ ଭୋଲା ! ଭୋଲାନାଥ ! କେହି କ'ଣ ନାହାନ୍ତି ? ଭଲା ଅଡୁଆ ହେଲା । ଚଷମାଟା ଛାଡ଼ି ଦେଇଗଲେ ଅଫିସ୍‌ରେ ପହଞ୍ଚି କ'ଣ କରୁଥିବେ ! ଭୋଲା (ଭିତରୁ କାହ୍ନୁ ଆସେ) କିରେ ସ୍କୁଲ୍ ଯାଇନୁ କି ?

କାହ୍ନୁ : ନାଇଁ ମୋତେ ଜ୍ୱର ।

ବିନୋଦିନୀ: ତୁ ତୋ ବାପାଙ୍କ ଅଫିସ୍ ଦେଖିଛୁ ?

କାହ୍ନୁ : ହଁ, ସେହିବାଟେ ତ ଆମ ସ୍କୁଲ୍ ।

ବିନୋଦିନୀ: ବାବୁ ଚଷମାଟା ଛାଡ଼ି ଦେଇ ଯାଇଛନ୍ତି ଦେଇ ଆସିପାରିବୁ ?

କାହ୍ନୁ : ହଁ ଦିଅନ୍ତୁ(ନେବାକୁ ଦୌଡ଼ିଆସେ ପଡ଼ିଯାଏ)

ବିନୋଦିନୀ: କିରେ ! କିରେ ! କ'ଣ ହେଲା (ଏହି ସମୟରେ ଲୋକମାନ୍ ଆସୁଥାଏ ଉଠାଏ)

ଲୋକମାନେ: ଆରେ ଆରେ କ'ଣ ହେଲା ଏମିତି ପଡ଼ି ଯାଉଛୁ ।

କାହ୍ନୁ : ମୋ ମୁଣ୍ଡଟା କ'ଣ ହେଇଗଲା ।

ବିନୋଦିନୀ: ଖାଇଛୁ ?

କାହ୍ନୁ : ହଁ ପରା ଏଇ ଏବେ ପଖାଳ ଖାଇଲି ।

ବିନୋଦିନୀ: ହଉ ଯା ଶୋଇପଡ଼ିବୁ, ଲୋକମାନ ଆସିଲାଣି ଚଷମା ନେଇଯିବ ।

ଲୋକମାନ : ହଁ ପରା, ମୁଁ ସେହି ଚଷମା ପାଇଁ ଆସିଛି । ସାର୍ ଧ୍ୱରିକିନା ବସିଛନ୍ତି । ଦସ୍ତଖତଟେ କରିପାରୁ ନାହାନ୍ତି, ମୋତେ ଶେଷରେ ଚଷମା ନେବାକୁ ପଠାଇଲେ ।

ବିନୋଦିନୀ: ମୁଁ ଜାଣେ ଚଷମା ନ ହେଲେ ପାଦେ ଆଗକୁ ଯାଇପାରିବେନି । ଏବେ ପଠଉ ଥିଲି, ତମେ ଆସିଗଲ ନେଇଯାଅ ।

ଲୋକମାନେ: ଦିଅନ୍ତୁ Madam (ନେଇ) କିରେ କାହ୍ନୁ ? ଏବେ ଭଲ ଲାଗିଲା ?

କାହ୍ନୁ : ହଁ ।

ବିନୋଦିନୀ: ଯା' ଶୋଇପଡ଼ ।(ଅଂଧାର)

## ଅନ୍ୟଏକ ଦିନ

ଲିସା : ଭୋଳା ମଉସା ! କାହ୍ନୁ କାହିଁ ?

ଭୋଳା : ସେପଟେ କୋଉଠି ବୁଲୁଛି ?

ଲିସା : ସେ ଆଜି ସ୍କୁଲ୍ ଯିବନି ?

ଭୋଳା : ତା' କଥା କିଏ ଜାଣେମା ? ଗରିବଛୁଆ ପଢ଼ିଲା କେତେ ନ ପଢ଼ିଲା କେତେ, ହାଡ଼ ଭାଙ୍ଗିବ ଭାତ ଖାଇବ । (ଅଂଧାର)

## ଅନ୍ୟଏକ ଦିନ

ମହେଶ ଓ ବିନୋଦିନୀ କଥା ଦେଉଥାନ୍ତି ।

ମହେଶ : ଏ ଭୋଳାଟା ମୂର୍ଖଟା ଡାକ୍ତର ପାଖକୁ ଗଲେ ସିନା ।

ବିନୋଦିନୀ: ସେମାନଙ୍କର ରୋଗ ସେମିତି, ବିନା ଔଷଧରେ ବି ସେମାନେ Cure ହୋଇଯିବେ (ଲିସା ଆସେ)

ମହେଶ : କ'ଣ ସ୍କୁଲ୍ ବେଗ୍ ସଜାଡ଼ି ସାରିଲୁ ?

ଲିସା : ଆଜି ପରା ପରୀକ୍ଷା କେବଳ ପେନ୍ ଆଉ ବକ୍ସଟେ ନେଲେ ହେବ ।

ବିନୋଦିନୀ: ହଁ ହଁ ଯା ।

(ଭୋଳା କାହ୍ନୁକୁ ଧରିଧରି କୁଆଡ଼କୁ ଯାଉଥାଏ ଆସନ୍ତି ମହେଶ, ପର୍ସରୁ ଟଙ୍କା ନିଅନ୍ତି ।)

(ମହେଶ ଓ ବିନୋଦିନୀ କଥା ହେଉଥାନ୍ତି ଲିସା ପହଞ୍ଚିବାରୁ କଥା ବନ୍ଦ କରନ୍ତି)

## ଅନ୍ୟଏକ ଦିନ

ଲିସା ଦୌଡ଼ି ଦୌଡ଼ି ଆସେ ଗେଟ୍ ଖୋଲି ।

ଲିସା : ମମି ! ମମି !

ବିନୋଦିନୀ: କ'ଣ ହେଲା ଗଡ଼ ଛିଣି ପକେଇଲୁ କି ?

ଲିସା : ମମି ମୁଁ ପାଷ ହୋଇଛି ।

ବିନୋଦିନୀ: ଆଚ୍ଛା ହଉ ଭିତରକୁ ଆ । (ଯାଆନ୍ତି ଅଂଧାର)

## ଅନ୍ୟଏକ ଦିନ

(ଲିସା ସହିତ ଇତୁ କଥା ହେଉଥାଏ)

ଇତୁ : ମୁଁ କ'ଣ କହୁଥିଲି, ଦେଖିଲୁ, ସେହି କଲମରେ ଲେଖିବାରୁ ତୁ ପାଷ ହେଲୁ ।

ଲିସା : ସତରେ ଏ କଲମଟା ଯେମିତି କୁହୁକ କଲମ, ହେଲେ... କାହ୍ନୁ ? କାହ୍ନୁ ପରୀକ୍ଷା ଦେଇଥିଲେ କ'ଣ ମୁଁ ପାଷ ହୋଇଥାନ୍ତି ।

ଇତୁ : କାହ୍ନୁ ତ ଆଉ ସ୍କୁଲ୍ ଯାଉନି ?

ଲିସା : ଇତୁ ଚୋରି କରିବା ପରା ପାପ ।

ଇତୁ : ହଁ ଚୋରି କରିବା ମହାପାପ

ଲିସା : ମୁଁ ତ କାହ୍ନୁର କଲମ ଚୋରି କରିଛି, ତା' ହେଲେ ତ ପାପ କରିଛି । ମୁଁ ଯାଉଛି ତା' କଲମ ତାକୁ ଫେରେଇ ଦେବି ।

ଇତୁ : ଫେରେଇ ଦବୁ ?

ଲିସା : ହଁ ପର ଜିନିଷ ଚୋରି କରିବା ମହାପାପ । (ଅଂଧାର)

## ଅନ୍ୟଏକ ଦିନ

(ଲିସା ଡାକି ଡାକି ଆସେ)

ଲିସା : କାହ୍ନୁ ! କାହ୍ନୁ ! ଏ କାହ୍ନୁ, (କାହ୍ନୁ ଆସେ)

କାହ୍ନୁ : କିଏ ? ଲିସା ! ତମେ କୁଆଡ଼େ ଆସିଛ ?

ଲିସା : ଜାଣିଛୁ ତୁ ଏଥର ପରୀକ୍ଷା ଦେଇନୁ ତ ମୁଁ ଫାଷ୍ଟ ହୋଇଯାଇଛି ।

କାହ୍ନୁ : ଭଲ ହୋଇଛି ତମ ମମି ଏବେ ଖୁସି ହେବେ ।

ଲିସା : ହେଲେ କାହ୍ନୁ ମୁଁ ଗୋଟେ ଭୁଲ୍ କାମ କରିଛି ।

କାହ୍ନୁ : କ'ଣ ?

ଲିସା : ଚୋରି କରିଛି ।

କାହ୍ନୁ : ଚୋରି କାହିଁକି କଲ ? ଚୋରି କରିବା ମହାପାପ ।

ଲିସା : ମୁଁ ଏବେ କ'ଣ କରିବି ?

କାହ୍ନୁ : ତୁମେ ଯାହାଠୁ ଚୋରି କରିଛ, ଯାଅ ତା' ପାଖରେ କ୍ଷମାମାଗି ଚୋରି ଜିନିଷ ତାକୁ ଫେରେଇ ଦିଅ ।

ଲିସା : କାହ୍ନୁ ! ତୁ ମୋତେ କ୍ଷମା କରିବୁନି ?

କାହ୍ନୁ : ତୁମେ ମୋତେ କାହିଁକି କ୍ଷମା ମାଗୁଛ ?

ଲିସା : ଦୁଷ୍ଟାମୀରେ ଫାଷ୍ଟ ହେବା ପାଇଁ ମୁଁ ତୋ ବେଗ୍‌ରୁ କଲମଟାକୁ ଚୋରେଇ ନେଇଥିଲି । ଏଇ ନେ ସେ କଲମ ।

କାହ୍ନୁ : (କଲମ ନିଏ, ଧରେ ଦେଖେ) ଏଇ କଲମରେ ଲେଖି ତମେ ଫାଷ୍ଟ ହୋଇଗଲ ?

ଲିସା : ହଁ

କାହ୍ନୁ : ଲିସା ! ମୁଁ ତ ଆଉ ପାଠପଢ଼ିବିନି, ଏ କଲମ ମୋର କ'ଣ ହେବ ? ତମେ ନେଇଯାଅ, ତମେ ଏଇଥିରେ ଲେଖି ଏମିତି ସବୁବେଳେ ଫାଷ୍ଟ ହେଉଥାଅ ।

ଲିସା : ତୁ ଆଉ ପାଠପଢ଼ିବୁନି ?

କାହ୍ନୁ : ନା

ଲିସା : କାହିଁକି ?

କାହ୍ନୁ : ମୋତେ ପରା Blood Cancer ହେଇଛି ।

ଲିସା : Blood Cancer ହେଲେ ପାଠ ପଢ଼ନ୍ତିନି ?

କାହ୍ନୁ : ଡାକ୍ତର କହୁଛନ୍ତି ମୁଁ କାଲେ ଆଉ ଭଲ ହେବିନି । ମୋ ବାପା ନା ବହୁତ କାନ୍ଦୁଛନ୍ତି ମୁଁ କାଲେ ଆଉ ବଂଚିବିନି ।

ଲିସା : ବଂଚିବୁନି ?

କାହ୍ନୁ : ନା ମୋ ଦେହର ରକ୍ତସବୁ ବିଷ ହୋଇଗଲାଣି । ଆଉ ଅଳ୍ପଦିନ ପରେ ମୁଁ ମରିଯିବି, ତେଣୁ ଏ କଲମ ମୋର କ'ଣ ହେବ ? ତମେ ନେଇଯାଅ ତମେ ପାଖରେ ରଖିଥାଅ । ଲିସା ମୁଁ ମରିଗଲେ ଆଉ ତ କଥା କହିପାରିବନି । ମୋ ବାପା ନା ସେତେବେଳେ ବହୁତ କାନ୍ଦିବେ ତମେ ତାଙ୍କୁ ବୁଝେଇ ଦବନା ଲିସା ।

ଲିସା : ନା କାହ୍ନୁ ନା ତୁ ମରନା ମୁଁ ଭୋଳା ମଉସାଙ୍କୁ କେମିତି ବୁଝେଇବି, ମୁଁ ତ ନିଜେ ବୁଝିପାରିବିନି ।

କାହ୍ନୁ : ଓଃ ଲିସା ମୁଁ ଥକି ଗଲିଣି ମୋ ମୁଣ୍ଡ ମୋ ମୁଣ୍ଡ କ'ଣ ହୋଇଯାଉଛି ।

ଲିସା : ନା କାହ୍ନୁ ନା । (ଅଂଧାର)

## ଅନ୍ୟଏକ ଦିନ

(ଭୋଳା ପାଗଳ ଭଳି ବାହୁନୁ ଥାଏ, ଏଣୁତେଣୁ କହି କାନ୍ଦୁଥାଏ)

ଭୋଳା : କାହ୍ନୁ ! ଏ କାହ୍ନୁ ଆରେ କୁଆଡ଼େ ଗଲୁ ? ଆଜି କ'ଣ ସ୍କୁଲ୍ ଯିବୁନି ? ସମୟ ହେଲାଣି ପରା, ହାଣ୍ଡିରେ ପଖାଳ ଅଛି ଆଳୁପୋଡ଼ା ଟିକେ ଚକୁଟି ଦେଇ ପଖାଳ ଦି'ଟା ଖାଇଦେ, କାହ୍ନୁ, କାହ୍ନୁ ତୁ ଆସୁନୁ କେନେରେ ? ମୋ ଉପରେ ରାଗିଚୁ କି ? ନାରେ ମୋ ବାପାଟା ପରା ମୁଁ ତୋତେ ଜମା ପିଟିବିନି । ତୁ ଯେତେ ଫାଷ୍ଟ ହଉଛୁ ହ, ମୁଁ କିଛି କହିବିନି, ଆରେ କିଛି କହୁନୁ କାହିଁକି ? ତୁ କ'ଣ ପଥର ହୋଇଗଲୁ ? ମୋ ବାପାଟା ପରା ! ଆ ! ମୋ ପାଖକୁ ପଳେଇଆ (ଲିସା ଆସେ) କାହ୍ନୁ ।

ଲିସା : ନାଇଁ ମଉସା ମୁଁ ଲିସା ।

ଭୋଳା : ଲିସା ! ଓ ମା' ଲିସା ! ତମେ ଆମ କାହ୍ନୁକୁ ଦେଖିଛ ? ତାକୁ ଟିକିଏ ଡାକିଦିଅ କିଛି ଖାଇନି ଭୋକ ହେଉଥିବ ମୋ ମାଆଟା ପରା ! କି ? ତମେ ଏମିତି କାନ୍ଦୁଛ କାହିଁକି ? କାହ୍ନୁ କ'ଣ କିଛି କହିଛି ? ନା ପୁଣି ଫାଷ୍ଟ ହେଇଯାଇଛି ? ମୋ ମାଆଟା ପରା ତମେ କାନ୍ଦନି ମୁଁ ତାକୁ ବୁଝେଇ ଦେବି ସେ ଆଉ ମୋଟେ ଫାଷ୍ଟ ହେବନି ।

ଲିସା : ଭୋଳା ମଉସା ! ଏ ତମର କ'ଣ ହେଲା, ତମେ ଏମିତି କାହିଁକି ହଉଛ ?

ଭୋଳା : ଆରେ କ'ଣ କରିବି କାହ୍ନୁଟା ଉପାସରେ ଅଛି ପରା ।

ଲିସା : ନା, ତମେ ଏମିତି ହେଲେ କାହ୍ନୁ କ'ଣ ଭାବିବ ?

ଭୋଳା : କାହ୍ନୁ ଭାବିବ ? କ'ଣ ଭାବିବ ?

ଲିସା : ସେ ପରା ମୋତେ କହିଯାଇଛି ଲିସା ମୋ ବାପା ବହୁତ କାନ୍ଦିବେ । ତମେ ତାଙ୍କୁ ବୁଝେଇ ଦବ । ମୁଁ ତ ବୁଝୁଛି ତମେ ବୁଝୁନ କାହିଁକି ?

ଭୋଳା : ମୋ କାହ୍ନୁ ସେ କଥା ବି କହିଯାଇଛି ?

ଲିସା : ସିଏ ତମକୁ କେତେ ଭଲପାଏ, ତମେ ତା' କଥା ମାନିବନି ?

ଭୋଳା : ହଁ ହଁ ମୋ କାହ୍ନୁ କଥା ନିଶ୍ଚୟ ମାନିବି ।

ଲିସା : dady କହୁଥିଲେ ଆମେ ସିନା କାହ୍ନୁକୁ ଦେଖିପାରୁନୁ ସିଏ କିନ୍ତୁ ଆମକୁ ଦେଖୁଛି, ଆମ କଥା ଶୁଣୁଛି । ତା' କଥା ନ ମାନିଲେ ତମେ ଏମିତି କାନ୍ଦିଲେ ସେ ଦୁଃଖ କରିବନି ?

ଭୋଳା : ସତକଥା ତ, ନା ମାଆ ନା ମୁଁ ଆଉ ଜମା କାନ୍ଦିବିନି ।

ଲିସା : ମୁଁ ତମ ପାଖରେ ଅଛି ପରା ତମେ ଚୁପ୍‌ଚାପ୍ ଖାଇଦେଇ ସୁଖରେ ରହିବ ।

ଭୋଳା : ମୋ ମାଆ ତମେ ମୋ କାହ୍ନୁ ।

**FLASH BACK** ସରିଯାଏ

(କଥା ଶେଷ କରନ୍ତି ବିଦ୍ୟାଧର ଓମ୍ ଆଶ୍ଚର୍ଯ୍ୟରେ ଚାହିଁଥାନ୍ତି)

ବିଦ୍ୟାଧର : ବାସ୍ ସେହିଦିନୁ ସେ କଲମ ଭୋଳା ଓ କାହ୍ନୁକୁ ସ୍ମୃତିରେ ସାଇତି ରଖିଛି ଲିସା ।

ଓମ୍ : ସାର୍ ବିଶ୍ୱାସ କରନ୍ତୁ ତ ଏ ବିଷୟରେ ଲିସା ମୋତେ କିଛି କହିନି ।

ବିଦ୍ୟାଧର : ଆବଶ୍ୟକ ପଡ଼ିନି ବା ଆପଣଙ୍କୁ ଏତେ ନୀଚମନା ବୋଲି ଭାବିନି ।

ଓମ୍ : ବାସ୍ତବିକ ମୁଁ ଛୋଟ ନୀଚମନା, ମୁଁ କେତେ ପବିତ୍ର ସଂପର୍କ କେତେ ମହତ ତ୍ୟାଗ ଓ ବଳିଦାନକୁ କେତେ ଛୋଟ ଆଖିରେ ଦେଖିଛି ।

(ଭୋଳା ଆସେ ଘରର ଝବି ଧରି)

ଭୋଳା : ସାର୍ ଜୁହାର ସାର୍, ଘରର ଝବି(ରଖିଦେଇ ଫେରି ଯାଆନ୍ତି)

ଓମ୍ : (ଆବେଗରେ) ଭୋଳା ମଉସା !

ଭୋଳା : (ଚମକି ଉଠେ) କିଏ ?

ଓମ୍ : ମୁଁ, ମୁଁ କ'ଣ ତମ କାହ୍ନୁ ପରି ଦିଶୁନି ।

ଭୋଳା : କାହ୍ନୁ ! (ଗହିଁ ରହନ୍ତି ଆଖିରୁ ପାଣି ବୋହି ଯାଉଥାଏ)

ଓମ୍ : (କାନ୍ଦିକାନ୍ଦି) ହଁ

ଗୀତ... କାହ୍ନୁ....କାହ୍ନୁରେ

ତୋତେ କି ପାଶୋରି ହେବ ମନୁରେ କାହ୍ନୁରେ ।

(ଏହି ସମୟରେ ମହେଶ ଓ ଲିସା ଆଟାଚି ଧରି ବାହାରି ପଡ଼ନ୍ତି ଲିସା ସାର୍‌ଙ୍କୁ ଜୁହାର ହୁଏ, ମହେଶ ନମସ୍କାର କରନ୍ତି ତା'ପରେ ବାହାରି ଯାଉଥାନ୍ତି ।)

ଓମ୍ : Dady !

ମହେଶ : (ଫେରି ଯାଆନ୍ତି, ଓମ୍ ଗୋଡ଼ ତଳେ ପଡ଼ନ୍ତି ମହେଶ ଉଠାନ୍ତି ଛାତିରେ ଭିଡ଼ି ଧରନ୍ତି ଲିସା ଆଗେଇ ଯାଏ, ସାମ୍ନାରେ ପଙ୍କଜ ଛିଡ଼ାହୁଏ ।)

ପଙ୍କଜ : କୁଆଡ଼େ ଯାଉଛୁ । ତୋର ଯଦି ଏମିତି କରିବାର ଥିଲା, ମୋତେ କାହିଁକି ଝପଡ଼ା ମାରି ବାଟକୁ ଆଣୁଥିଲୁ ? ମୋତେ କାହିଁକି ସାର୍‌ଙ୍କ ପାଦ ତଳେ ପକାଇ ମଣିଷ କରୁଥିଲୁ ?

ଓମ୍ : ପଙ୍କଜ ବାବୁ ଲିସାକୁ ସାମ୍ନା କରିବାର ସମସ୍ତ ନୈତିକ ସାହସ ହରାଇ ବସିଛି । Please help me.

ପଙ୍କଜ : No, ପଙ୍କଜ ବାବୁ ନୁହେଁ ପଙ୍କଜ ।

ଓମ୍ : ପଙ୍କଜ ?

ପଙ୍କଜ : ପରେ କହିବି – ଲିସା ତୋତେ ପରା ବଡ଼ ଭଉଣୀ କହିଛି ସାନଭାଇର କଥା ରଖିବୁନି ?

ଲିସା : (ରହେଁ, ପଛକୁ ରହେଁ ଫେରେ ଓମ୍ ଆଗାନ୍ତି, ଲକ୍ଷ୍ମୀପୁରାଣ ଗାଇଯାଏ)

ଓମ୍ ଲିସା ହାତକୁ କଲମଟା ବଢ଼େଇ ଦିଅନ୍ତି)

ସ୍ମୃତି ଏକ ଦୁଷ୍କାମୀର...

ଦୁଷ୍କାମୀର ଦୁଷ୍କାମୀର

ଗଳ୍ପ ନୁହେଁ କଳ୍ପନାର ॥

ମନେମନେ ଗଢ଼େ ସିଏ

ଗଢ଼ି ପୁଣି ଭାଂଗିଦିଏ

ମୂର୍ତ୍ତିଟିଏ ମୂର୍ଖାମିର ॥





ଓଡ଼ିଆ ମଂଚ ନାଟକ ପାଇଁ ଯେଉଁ କେତେଜଣ ନାଟ୍ୟକାର ନିଜକୁ ସଂପୂର୍ଣ୍ଣରୂପେ ଉତ୍ସର୍ଗ କରିଦେଇଛନ୍ତି ସେମାନଙ୍କ ମଧ୍ୟରେ ନାଟ୍ୟକାର ହେମେନ୍ଦ୍ର ମହାପାତ୍ର ଅନ୍ୟତମ। ସାଂପ୍ରତିକ ସମୟ ଓ ଜୀବନକୁ ମଂଚଉପରେ ବେଶ୍ ପ୍ରାଂଜଳ ଭାବରେ ପରୀକ୍ଷା ନିରୀକ୍ଷାକରି ଏକ ସକାରାତ୍ମକ ସିଦ୍ଧାନ୍ତରେ ଉପନୀତ ହେବାରେ ତାଙ୍କର ଏକନିଷ୍ଠ ଉଦ୍ୟମ ବେଶ ପ୍ରଶଂସନୀୟ। ତାଙ୍କ ରଚିତ ଶତାଧିକ ନାଟକ, ଗୀତିନାଟ୍ୟ, ଟେଲିନାଟକ, ଟେଲିଫିଲ୍ମ, ଓଡ଼ିଆ ପ୍ରଗତୀବାଦୀ ନାଟ୍ୟଧାରାର ପରିଚୟ ଦିଏ, ଏଥି ପାଇଁ ସେ ବହୁବାର ପୁରସ୍କୃତ ଓ ସଂବର୍ଦ୍ଧିତ। ତାଙ୍କ ବହୁଚର୍ଚ୍ଚିତ ନାଟକ 'ଯୁଗ ଚରିତ ବୃତ୍ତାନ୍ତ' ପାଇଁ ସେ ୨୦୦୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ। ବହୁ ଚର୍ଚ୍ଚିତ ଓଡିଆ ଚଳଚିତ୍ର 'ମୀମାଂସା' ତାଙ୍କର ଅନ୍ୟ ଏକ କୃତ୍ତିତ୍ୱ। ସେ 'ରଂଗମଂଚ' ନାମରେ ଏକ ଦୃଶ୍ୟ ଭିତ୍ତିକ ଭିଡିଓ ସାହିତ୍ୟ ପତ୍ରିକା ପ୍ରାୟ ପନ୍ଦର ବର୍ଷ ଧରି ପ୍ରକାଶ କରି ଅସୁଛନ୍ତି। ଏହି ପୁସ୍ତକଟି ତାଙ୍କର ଅନ୍ୟତମ ସଫଳ ନାଟ୍ୟ ପୁସ୍ତକ।